# ଆଧୁନିକ
# ଓଡ଼ିଆ ସାହିତ୍ୟର ଗତିପଥ

ଡକ୍ଟର ଗୋପାଲ ଚନ୍ଦ୍ର ମିଶ୍ର ଏମ୍. ଏ., ଡି. ଲିଟ୍.

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ଆଧୁନିକ
# ଓଡ଼ିଆ ସାହିତ୍ୟର ଗତିପଥ

ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର ଏମ୍. ଏ., ଡି. ଲିଟ୍.

ଗ୍ରନ୍ଥମନ୍ଦିର ପ୍ରକାଶନୀ

ପ୍ରକାଶକ

**ଫ୍ରେଣ୍ଡସ୍ ପବ୍ଲିଶର୍ସ**

ବିନୋଦବିହାରୀ

କଟକ-୨

ମୁଦ୍ରକ

ଆଲୋକ ମୟ ଦାଶଗୁପ୍ତ

**ୟୁରେକା**

ଦେୱାନ ବଜାର

କଟକ-୧

ପ୍ରଥମ ପ୍ରକାଶକାଳ

**ସେପ୍ଟେମ୍ବର**

୧୯୬୪

**ମୂଲ୍ୟ**

ଦୁଇଟଙ୍କା ମାତ୍ର

[illegible] [illegible] ଏକ ଟଙ୍କା

# ସୂଚୀ

# ଓଡ଼ିଆ ସାହିତ୍ୟରେ ଆଧୁନିକତା

ଆଧୁନିକ ସାହିତ୍ୟ କଥା କହିବାକୁ ଗଲାବେଳେ ପ୍ରସଙ୍ଗକ୍ରମେ ପ୍ରଥମେ ପ୍ରାଚୀନ ସାହିତ୍ୟ ଓ ଆନ୍ତର୍ଜାତିକ ସାହିତ୍ୟ ତଥା ସାହିତ୍ୟର କ୍ରମବିକାଶ ଉପରେ ହେଲା, କହିବା ଆବଶ୍ୟକ ହେଉଛି । ଏବେ ଲିଖିତ ସାହିତ୍ୟକୁ ସାହିତ୍ୟ ବୋଲି କୁହାହେଉଛି । ମାତ୍ର ପ୍ରଥମେ ତାହା ନ ଥିଲା । ଲିପିର ଆବିଷ୍କାର ପୂର୍ବରୁ ହଜାର ହଜାର ବର୍ଷ ତଳେ ମଣିଷ ଶବ୍ଦ ସାହାଯ୍ୟରେ ଭାବ ବ୍ୟକ୍ତ କରୁଥିଲା । ଏବେ ଚୀନ, ଇଜିପ୍ଟ, ଭାରତ ଓ ଜୁନାଗଡ଼ ଆଦିରୁ ମିଳିଥିବା ତାମ୍ରଫଳକ ଓ ଶିଳାଲିପିମାନଙ୍କରୁ ଏ କଥା ଜଣାଯାଏ । ଇଜିପ୍ଟୀୟମାନେ ଓ ସୁମେ-ରୀୟମାନେ ଶିଳାଲିପି; ଇଟା ଓ ପୋଡ଼ା ମାଟିର ଗ୍ରନ୍ଥସାହିତ୍ୟ ସୃଷ୍ଟି କରିଥିଲେ । ପ୍ରତ୍ନତତ୍ତ୍ୱବିତ୍‌ମାନେ କହନ୍ତି—ପାଞ୍ଚ ଲକ୍ଷ ବର୍ଷ ତଳେ ମଣିଷ ପ୍ରଥମେ ସାହିତ୍ୟ ସୃଷ୍ଟି କଲା । ତାହାର ସାମାଜିକ ଜୀବନର ଆରମ୍ଭରେ ସ୍ଥାପତ୍ୟ ସାହିତ୍ୟର ଆରମ୍ଭ ହୋଇଥିଲା । ଏହା ଖ୍ରୀଷ୍ଟଜନ୍ମ ପୂର୍ବର ଘଟଣା । ବୌଦ୍ଧଜାତକର ଅନେକ ଗଳ୍ପ ସ୍ଥାପତ୍ୟ-ସାହିତ୍ୟ ରୂପରେ ଥିଲା । ଭାବ ପ୍ରକାଶର ଯେ କୌଣସି ଅବସ୍ଥା ସାହିତ୍ୟରୂପେ ବିବେଚିତ ହୁଏ ଓ ଏହା ସାହିତ୍ୟରି ଧାରା ଥିଲା ! କୋଡ଼ିଏ ହଜାର ବର୍ଷ ତଳର ଧୂସର ଆକାଶରେ ସ୍ଥାପତ୍ୟ-ସାହିତ୍ୟର ସୂର୍ଯ୍ୟ ଉଦିତ ହୋଇଥିଲେ । ସେତେବେଳେ ମଣିଷ ଶିକାରୀ ଥିଲା । ସେତେବେଳର ସାହିତ୍ୟ ଯାହା ଥିଲା, ଆଲୋଚନା କଲେ ଆଜିର ସାହିତ୍ୟ କେତେ ଉନ୍ନତ, ତାହା ପ୍ରତିପନ୍ନ ହେବ ।

ଶିକାରୀ ସଭ୍ୟତା କାଳରେ କୃଷି ଓ ଗୃହନିର୍ମାଣ ଅଜ୍ଞାତ ଥିଲା । ଅସ୍ତ୍ରଶସ୍ତ୍ର ଧରି ଶିକାର କରିବା ଓ ପର୍ବତ ଗୁମ୍ଫାରେ ବାସ କରି ଜୀବନ କାଟିବା ଜୀବିକାର ପ୍ରଧାନ ଧାରା ଥିଲା । ଏହାରି ମାଧ୍ୟମରେ ହିଁ ଶିକାରୀ ଜାତିର କଳା ବିକଶିତ ହେଉଥିଲା । ଡକ୍ଟର ଟ୍ରେଲ୍‌ଡ଼ କହନ୍ତି—ଅସ୍ତ୍ରଶସ୍ତ୍ର କେବଳ ଶିକାର ପାଇଁ ଉଦ୍ଦିଷ୍ଟ ନ ଥିଲା । ତାହା ମାଧ୍ୟମରେ ସୌନ୍ଦର୍ଯ୍ୟ ବିକାଶ ଆତ୍ମପ୍ରକାଶ ତଥା ସାହିତ୍ୟସୃଷ୍ଟି କରାଯାଉଥିଲା । ପାଶ୍ଚାତ୍ୟ ଦେଶର ଜଙ୍ଗଲ ମଧ୍ୟରେ ପର୍ବତ ଗହ୍ୱରମାନଙ୍କରେ ବାଘ, ଭାଲୁମାନଙ୍କର ଚିତ୍ର ଅଙ୍କିତ ଅଛି । ତାହା ଶିକାରୀଯୁଗର ସାହିତ୍ୟ । ସେତେବେଳର ଯେଉଁ ସାହିତ୍ୟିକମାନେ ଗୁହାମାନଙ୍କରେ ଏହି ଛବିମଞ୍ଜୁଳ ଚିତ୍ର ଅଙ୍କନ କରୁଥିଲେ, ଏବେ ତାହା ଗବେଷିତ ହୋଇ ପ୍ରଶଂସିତ ହେଉଛି । ସେତେବେଳର ଚିତ୍ରକର ବା ସାହିତ୍ୟିକମାନଙ୍କର ଖାଦ୍ୟ ସନ୍ଧାନ ମୃଗୟୁ ସମାଜ କରୁଥିଲା । ଏଥିରେ କେବଳ ସାହିତ୍ୟିକ ଉଦ୍ଦେଶ୍ୟ ନ ଥିଲା । ସାମାଜିକ ଉଦ୍ଦେଶ୍ୟ ମଧ୍ୟ ଥିଲା । ଜଣେ ପ୍ରଫେସର କହନ୍ତି—ଶିକାର ଦ୍ୱାରା ଖାଦ୍ୟପ୍ରାପ୍ତି ନିଶ୍ଚିତ ନ ଥିଲା । ସହଜରେ ଖାଦ୍ୟ ପାଇବା ପାଇଁ ମୃଗୟୁ ସମାଜ ଏପରି ଚିତ୍ର ଅଙ୍କନ କରୁଥିଲେ । ଏହା ଇନ୍ଦ୍ରଜାଲ ବା ଧର୍ମାଚାରର ମନ୍ତ୍ର ଥିଲା । ଏହା ସେତେବେଳର ସାହିତ୍ୟ । ଡକ୍ଟର ଫ୍ରୟେଡ଼ କହନ୍ତି—ସେତେବେଳେ ଲୋକଙ୍କଠାରେ ଈଶ୍ୱରଭାବ ଜନ୍ମିଥିଲା । ମନୁଷ୍ୟ ଓ ପ୍ରକୃତିର ଚିରନ୍ତନ ସଂଗ୍ରାମ ଓ ଜୟ ପରାଜୟ ମଧ୍ୟରେ ଏହି ଈଶ୍ୱରଭାବ ଜାଗ୍ରତ ହୋଇଥିଲା । ଅଲେକେମିରେ ପରଶୁ ପଥରର ଅନ୍ୱେଷଣ ରସାୟନବିଦ୍ୟାର ସନ୍ଧାନ ଦେଲାପରି ଏହି ଧର୍ମାଚାରର ମନ୍ତ୍ର ବିଜ୍ଞାନର ପ୍ରଥମ ସୋପାନ ବା ବିକାଶ ରୂପେ କାର୍ଯ୍ୟକାରୀ ହେଲା । ଏହି ଧର୍ମାଚାରର ମନ୍ତ୍ର ଏବେ ମଧ୍ୟ ଆମ ସମାଜରେ ପରିଦୃଷ୍ଟ ହୁଏ । ବର୍ଷା ନ ହେଲେ ବୃଷଭଙ୍କୁ ପାଣିରେ ବୁଡ଼ାଇବା ଓ ହୋମାଦି କରିବା ବ୍ୟାପାର ଏହି ମନୋବୃତ୍ତି ବ୍ୟଞ୍ଜିତ

ଅନ୍ୟ କନ୍ତୁ ନୁହେଁ । ସେ କାଳର ମୃଗୟୁ ସମାଜରେ ଶିକାର ମିଳିବାର ଅନିଶ୍ଚିତତା ଉପଲବ୍ଧି ହେଲେ ମୃଗୟୁ ଶିକାର ଅନ୍ୱେଷଣରେ ବାହାରିଲାବେଳେ ଗୁମ୍ଫାଖୋଦିତ ବନ୍ୟଜନ୍ତୁ ଉପରେ କଣ୍ଟକବିଦ୍ଧ କରି ଅନୁକୂଳ କରେ । ଏହା ଫଳରେ ନିଶ୍ଚୟ ପଶୁର ସନ୍ଧାନ ମିଳିବ ବୋଲି ସେମାନଙ୍କର ସାମାଜିକ ବିଶ୍ୱାସ ଥିଲା ।

କ୍ରମେ ସାହିତ୍ୟ ମାଧ୍ୟମରେ ଲୋକସେବାର ପ୍ରକାଶ ହେଲା । ଶିକାରୀ ସାହିତ୍ୟିକମାନେ ମନ୍ତ୍ରବିତ୍ ପୁରୋହିତ ହେଲେ । କ୍ରମେ ସେମାନେ କୃଷିବିଦ୍ୟା ଜାଣିଲେ । ଶିକାରୀ ସାହିତ୍ୟିକଙ୍କର ପ୍ରୟୋଜନ ରହିଲା ନାହିଁ । ଆଉ ସାମାଜିକ ବିଶ୍ୱାସର ବଶବର୍ତ୍ତୀ ହୋଇ ଶିକାର ମିଳିବାର ବିଶ୍ୱାସ ଦୃଷ୍ଟିରୁ ସାହିତ୍ୟ ସୃଷ୍ଟି କରିବା ଦରକାର ହେଲା ନାହିଁ । କୃଷି କରି ସେମାନେ ଜୀବନଧାରଣରେ ପ୍ରାଚୁର୍ଯ୍ୟ ମଧ୍ୟରେ ଚଳିବାକୁ ସୁଯୋଗ ପାଇଲେ । ତେଣୁ ସାହିତ୍ୟ ପାଇଁ ସାହିତ୍ୟ ସୃଷ୍ଟି କଲେ । କଳ୍ପନାବିଳାସ ଏହାର ଲକ୍ଷ୍ୟ ହେଲା । ସ୍ପେନର ପୂର୍ବାଞ୍ଚଳରେ ନାରୀର ନଗ୍ନ ଚିତ୍ରମାନ ଏବେ ମିଳୁଛି । ସେମାନଙ୍କର ଉନ୍ନତ ବକ୍ଷ ଏବଂ ସୌଷ୍ଠବାନ୍ୱିତ ଅବୟବମାନଙ୍କର ଲଳିତ ପ୍ରକାଶ ସେହି ଚିତ୍ରମାନଙ୍କରେ ହୋଇଛି । ଏହାଦ୍ୱାରା ସେମାନେ ବିଳାସ-ବ୍ୟସନ ଓ କଳ୍ପନା-ବିଳାସକୁ ଚରିତାର୍ଥ କରିବା ସଙ୍ଗେ ମାତୃତ୍ୱ ଓ ବିଶ୍ୱବିକାଶ ଦୃଷ୍ଟିରୁ ନାରୀକୁ ପୂଜା କରନ୍ତି । ଦକ୍ଷିଣ ଆମେରିକାରେ ଏହା କରାଯାଉଛି । ଏହା ଶିକାରୀ-ସାହିତ୍ୟର ଦ୍ୱିତୀୟ ଅବସ୍ଥା ।

କ୍ରମେ କୃଷି ଉନ୍ନତ ହେଲା । ତତ୍କାଳୀନ ସମାଜ ଉନ୍ନତ ଶସ୍ୟବିକାଶ ପାଇଁ ଉଦ୍ୟମ କଲା । ଏଥିପାଇଁ ଲୋକଙ୍କୁ ସାହାଯ୍ୟ କରିବା ନିମନ୍ତେ ସାହିତ୍ୟିକ ତାଙ୍କର ଉଦ୍ୟମ ଚଳାଇଲେ । ଶସ୍ୟବିକାଶ ପାଇଁ ମାଟିର ଗର୍ଭରେ ଲୋକଙ୍କୁ ବଳିଦେବା କଥା ସେ କହିଲା । ପରବର୍ତ୍ତୀ

ଯୁଗରେ ଏହା ହିଁ ହେଲା ନରବଳି । କର୍ଣ୍ଣ କଂ (                    )
ଭାବରେ ଲୋକଙ୍କୁ ନାନା ଭୂଷଣରେ ବିଭୂଷିତ କରି ମାଟିରେ ପୋତି
ଦିଆଯାଉଥିଲା । ଏହା ହିଁ ଥିଲା ସେତେବେଳର ସାହିତ୍ୟବିକାଶର
ଧାରା । ଏହି ଘଟନାର ପ୍ରବର୍ତ୍ତନ ଯୋଗୁଁ ଗ୍ରୀସ୍ ଦେଶରେ ଅଧିକ
ବିୟୋଗାନ୍ତକ ନାଟକ ସମ୍ଭବ ହୋଇଥିଲା ।

ପ୍ରାଚୁର୍ଯ୍ୟ ଓ ବିଭବ ସାହିତ୍ୟକୁ ବଞ୍ଚାଇ ରଖେ । ଏଲିଜାବେଥ
ଯୁଗର ପ୍ରାଚୁର୍ଯ୍ୟ ମଧ୍ୟରେ ସେକ୍ସପିୟର, ବିକ୍ରମଙ୍କ ରାଜତ୍ୱ କାଳରେ
କାଳିଦାସ ରସାଳ ସାହିତ୍ୟ ସୃଷ୍ଟି କରିବାକୁ ହିଁ ସମର୍ଥ ହୋଇଥିଲେ ।
ପ୍ରାଚୁର୍ଯ୍ୟ ହିଁ ଏହା ମୂଳରେ ନିହିତ ଥିଲା । ବିକାଶ ଓ ଉତ୍ପାଦନ ସାହିତ୍ୟ-
ସୃଷ୍ଟିର ସହାୟକ ଥିଲା । କଡ୍‌ୱେଲ କହନ୍ତି—ଆଦିମ ମାନବ ଏହା
କରୁଥିଲା । ମାୟା ଓ ବାସ୍ତବ ନାଟକ କୃଷିକାଣ୍ଡରୁ ପ୍ରେରଣା ଗ୍ରହଣ
କରିଥିଲା ।

ନୂତନ ପ୍ରସ୍ତରଯୁଗରେ କୃଷିସଭ୍ୟତା ଉନ୍ନତ ହୋଇଥିଲା ।
ଗ୍ରାମଗୁଡ଼ିକ ସ୍ୱୟଂସମ୍ପୂର୍ଣ୍ଣ ଥିଲା ଓ ଲୋକ ସେତେବେଳେ ନଗରମାନ
ଗଠନ କରିଥିଲେ । ମହେଞ୍ଜୋଦାରୋ ଓ ହରପ୍ପା ନୂତନ ପ୍ରସ୍ତର ଓ
ତାମ୍ରଯୁଗର ସଭ୍ୟତା । ସମସାମୟିକ ଭାବରେ ଟାଇଗ୍ରିସ୍, ଇଉଫ୍ରେଟିସ
ଓ ନୀଳନଦୀର ଅବବାହିକାରେ ଏହି ପ୍ରକାର ସଭ୍ୟତା ଗଢ଼ି
ଉଠିଥିଲା ।

ବେଦରୁ ଆମ ସାହିତ୍ୟର ଆରମ୍ଭ । ବେଦର ସମସାମୟିକ
ଭାବରେ ଇଜିପ୍ଟରେ ମଧ୍ୟ ଅନୁରୂପ ଗ୍ରନ୍ଥ ରଚିତ ହୋଇଥିଲା । ତାହା
(                              ) ନାମରେ ପରିଚିତ । ବେଦ ଓ ଏହି
ପୁସ୍ତକର ବିଷୟବସ୍ତୁ ଏବଂ ଭାବଧାରାରେ ସାମ୍ୟ ଲକ୍ଷିତ ହୁଏ । ସମାଜ ପାଇଁ
ସାମ୍ୟ, ମୈତ୍ରୀ ଓ କର୍ତ୍ତବ୍ୟବୋଧର ପ୍ରେରଣାରୁ ସେତେବେଳେ କାବ୍ୟ-

କବିତାର ସୃଷ୍ଟି ହୋଇଥିଲା । ସଂସ୍କୃତ ସାହିତ୍ୟ ଖୁବ ଉନ୍ନତ ଥିଲା । ନଗର ଗଠନ ପରେ ସାହିତ୍ୟର ଆଭିମୁଖ୍ୟ ବଦଳିଲା । ଈଶ୍ୱରବିଶ୍ୱାସ ସ୍ଥାନରେ କଳ୍ପନାବିଳାସ ସ୍ଥାନ ପାଇଲା । ଆରିଷ୍ଟଟଲ କହନ୍ତି—ନୂଆ ସୃଷ୍ଟି କରିବା ସାହିତ୍ୟର ଲକ୍ଷ୍ୟ । ଯାହା ହେତୁହୀନ, ମୂଲ୍ୟହୀନ ଓ ଯାହା ମିଛ ଓ କଳ୍ପନାବିଳାସ, ତହିଁରୁ ହିଁ ସାହିତ୍ୟର ସୃଷ୍ଟି । ସକ୍ରେଟିସ୍ କହିଛନ୍ତି—କବି ସ୍ୱର୍ଗରୁ ଆସି ନୂତନ କଥା ଶୁଣାନ୍ତି ।

ଶିକାଗୋ ସାହିତ୍ୟ ଉନ୍ନତ ହୋଇ ସମାଜ ଓ ଜୀବନକୁ ଆଦର କଲା । ସାମାଜିକ ଦାୟିତ୍ୱର ପ୍ରେରଣା ଶବ୍ଦ ସାହାଯ୍ୟରେ ପ୍ରକାଶିତ ହେଉଥିଲା । ନଗର ଗଠନ ପରେ ଲିପିରେ ଓ ଚନ୍ଦୁଷ୍ଟରେ କବିତାରେ ଆତ୍ମପ୍ରକାଶ କଲା । ଏବେ ସାହିତ୍ୟର ଧାରା ବଦଳିଛି । ସାହିତ୍ୟରେ ରାଜନୀତି ମୁଖ୍ୟ ହୋଇଛି । ଲୋକେ ଅନାହାର, ଅଭାବ ଓ ଅନଟନରେ ପଡ଼ିଥିଲାବେଳେ କଳ୍ପନାବିଳାସୀ ହୋଇପାରେ ନାହିଁ । ବସ୍ତୁତଃ ତାହା କାମ୍ୟ ନୁହେଁ । ତେତେବେଳେ ଜୀବନ ସମସ୍ୟା ଉପରେ ହିଁ ସାହିତ୍ୟସୃଷ୍ଟି ହୁଏ । ଏହା ହେବା ଉଚିତ ।

ପୂର୍ବେ ଲିପି ନ ଥିଲା । ତଥାପି ପଦ, ଇଙ୍ଗିତ ବା ସଙ୍କେତରେ ମନୁଷ୍ୟ ତାହା ପ୍ରକାଶ କରୁଥିଲା । ତାହା ମୁଖେ ମୁଖେ ମଧ୍ୟ ଥିଲା । ଏବେ ଲିଖିତ ସାହିତ୍ୟ, ସାହିତ୍ୟ ହୋଇଛି । ଅଶୋକଙ୍କ ଅନୁଶାସନ ଏହି ପ୍ରକାର ସାହିତ୍ୟକୁ ବଞ୍ଚାଇ ରଖିଛି ।

ମନୁଷ୍ୟ ମନରେ କ୍ରିୟା ଓ ପ୍ରତିକ୍ରିୟା ଅଛି । ମେଘ ଉଠାଇଲା-ବେଳେ ଗିରିଗୁହାବାସୀ ଆଦିମ ମାନବର ମାନସପଟରେ ନିଶ୍ଚୟ କ୍ରିୟା ପ୍ରତିକ୍ରିୟା ସୃଷ୍ଟି ହୋଇଥିବ । ବରଷା ସକ୍ଷ ପରି ଉନ୍ନତ କଳ୍ପନା-ବିଳାସୀ ନ ହୋଇଥିଲେ ମଧ୍ୟ ତାହାର ହୃଦୟରେ ନିଶ୍ଚୟ ଅନୁରୂପୀ ଭାବର ଉଦ୍ରେକ ହୋଇଥିବ । ଏ ଭାବ ଚିରନ୍ତନ । ମନୁଷ୍ୟ ତାକୁ

ପ୍ରକାଶ କରିବାକୁ ନିୟତ ଚେଷ୍ଟିତ । ନାନା ଲିପି ଓ ଭାଷା ସାହାଯ୍ୟରେ ସେ ଏହାକୁ କାର୍ଯ୍ୟକାରୀ କରୁଛି । ସାହିତ୍ୟ ଜୈବଧର୍ମ ଅଟେ । ବୟସ ଭେଦରେ ଏହାର ପ୍ରକାଶରେ ତାରତମ୍ୟ ହୋଇପାରେ; ମାତ୍ର ପ୍ରକାଶଭଙ୍ଗୀ ସମସ୍ତଙ୍କଠାରେ ଅଛି । ବାଲ୍ମୀକିଙ୍କର ବଧ କ୍ରୌଞ୍ଚ-ବିହଙ୍ଗ ଦର୍ଶନଜନିତ କୋହ ଆଜି ବିଶ୍ୱସାହିତ୍ୟ । ମନୁଷ୍ୟ ଅନ୍ତରର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିର ପ୍ରକାଶ ହିଁ ସାହିତ୍ୟ । ଏହା ବଚନ ବିଷୟ ନୁହେଁ । ମାତ୍ର ଅନ୍ତରର ଭାବ । ବର୍ଷାର ଆଗମନରେ ପୃଥିବୀ ରଜସ୍ୱଳା ହୁଏ । ପରେ ଶସ୍ୟଶ୍ୟାମଳା ହୋଇ ବ୍ୟଥା ଓ ବେଦନାକୁ ଭୁଲିଯାଏ । ସାହିତ୍ୟିକ ଏହାର ଅବଲମ୍ବନରେ ସାହିତ୍ୟ ସୃଷ୍ଟି କରେ । ଶିଳ୍ପୀ ଓ ସାହିତ୍ୟିକ ଜାଣନ୍ତି—ପଙ୍କରୁ ପଦ୍ମର ଜନ୍ମ । କୃଷକର ଶସ୍ୟସମ୍ପଦ ଅପରିମିତ କାୟକ୍ଳେଶରୁ ସମ୍ଭୂତ । ଏହି ବ୍ୟଥାରୁ ସାହିତ୍ୟ ସୃଷ୍ଟି ସ୍ୱାଭାବିକ । କବି କାଳିଦାସ ବିରହୀ ଯକ୍ଷର ବ୍ୟଥାତ୍ମକ ଭାବ ସାହିତ୍ୟ ଆକାରରେ ପ୍ରକାଶ କରିଛନ୍ତି । ବ୍ୟଥାର ଏ ସାହିତ୍ୟ ଆଜି ବିଶ୍ୱ ସାହିତ୍ୟ । କବି ଯେଉଁ ବ୍ୟଥାନୁଭବ କରେ, ସେ ତା'ର ପ୍ରତିଦାନ ଦିଏ କାବ୍ୟକବିତାରେ । ଜନନୀ ଯେପରି ତା'ର ବ୍ୟଥା ଜାଣେ, କବି ସେହିପରି ସୃଷ୍ଟିର ବ୍ୟଥା ଜାଣେ । ସେ ମନୁଷ୍ୟର ବ୍ୟଥାକୁ ଉପଲବ୍ଧି କରି ସାହିତ୍ୟ ସୃଷ୍ଟି କରେ; ଏ କଥା ଗ୍ରୀସ୍‌ର ଦାର୍ଶନିକ ଆରିଷ୍ଟଟଲ କହି ଯାଇଛନ୍ତି । ପୁଣି ମାଥ୍ୟୁଆର୍ଣ୍ଣଲ୍ଡ୍ ପ୍ରଭୃତି ସମାଲୋଚକ, କୀଟ୍ସ, ବାଇରନ୍, ସେଲି ଓ ଟଲଷ୍ଟୟ ପ୍ରଭୃତି କହିଛନ୍ତି—ସାହିତ୍ୟ ଜୀବନର ମାନ ଓ ମୁକୁର । ସାହିତ୍ୟ ମାଧ୍ୟମରେ ପୃଥିବୀର ଲୋକେ ଏକ ହୋଇ ପାରୁଛନ୍ତି । ଏହା ଐକ୍ୟ ଓ ସମାବେଶର ସୂତ୍ର । ଫୁଲଗୁଡ଼ିକୁ ସୂତା ଗୁନ୍ଥି ରଖିଲା ପରି ସାହିତ୍ୟ ସମସ୍ତଙ୍କୁ ଏକ କରିଦିଏ ।

ହଜାର ହଜାର ବର୍ଷ ଅତିକ୍ରାନ୍ତ ହେଲା ପରେ ଆଜିର ଆଧୁନିକ ସାହିତ୍ୟ ସୃଷ୍ଟି ହୋଇଛି । ଏହାର ଆରମ୍ଭ ଓ ପ୍ରଥମ ଗ୍ରନ୍ଥ ଏ ପର୍ଯ୍ୟନ୍ତ

ଅମୀମାଂସିତ । ପ୍ରଫେସର ହରପ୍ରସାଦ ଶାସ୍ତ୍ରୀ କହନ୍ତି—ବୌଦ୍ଧଗାନ ଦୋହା ବଙ୍ଗଳାସାହିତ୍ୟ । ମାତ୍ର ପ୍ରକୃତରେ ଏହା ଷଷ୍ଠ ଶତାବ୍ଦୀର ଓଡ଼ିଆସାହିତ୍ୟ । ବତ୍ସା ଦାସଙ୍କରି କଳସା ଚଉତିଶା ପ୍ରଥମ ହେଲେହେଁ ବିବଦମାନ । ଏଣୁ ସାରଳା ସାହିତ୍ୟକୁ ପ୍ରଥମ ବୋଲି କୁହାଯାଏ ।

ସାରଳା ସାହିତ୍ୟର ଧାରା ଏବେ ବଦଳିଛି । ଇଂଲଣ୍ଡରେ ଏଲିଜାବେଥ୍ ଯୁଗର ସାହିତ୍ୟ ଏବେ ନାହିଁ । ବର୍ଣ୍ଣାଡ୍‌ସଙ୍କ ସାହିତ୍ୟର ଧାରା ସେକ୍‌ସପିଅରଙ୍କ ସାହିତ୍ୟ ଧାରାଠାରୁ ପରିବର୍ତ୍ତିତ । ମନୁଷ୍ୟର ସାମାଜିକ ବିକାଶକ୍ରମ ଅନୁଯାୟୀ ସାହିତ୍ୟର ବିକାଶ ମଧ୍ୟ ସଂଘଟିତ ହୋଇଛି । ସାରଳା କା ବତ୍ସା ଦାସଙ୍କ ଯୁଗର ସାହିତ୍ୟ ଏବେ ନାହିଁ । ଏବେ ନୂତନ ଗଦ୍ୟ-ସାହିତ୍ୟ ପ୍ରଧାନ ହୋଇଛି ।

ପ୍ରାଚୀନ ସାହିତ୍ୟ ପଦ୍ୟ-ସାହିତ୍ୟ ଥିଲା । ସାରଳା ସାହିତ୍ୟ ଏକ ପ୍ରଧାନ ପଦ୍ୟ-ସାହିତ୍ୟ । ଚତୁର୍ଦ୍ଦଶ ଶତାବ୍ଦୀରୁ ଆମର ଓଡ଼ିଆ ସାହିତ୍ୟ ଆରବ୍ଧ ହେଲା । ସାରଳା ଆମ ଜାତୀୟ କବି । ସାରଳାଯୁଗ ପରେ ପଞ୍ଚସଖାଯୁଗ, ଭଞ୍ଜଯୁଗ ଓ ତା'ପରେ ରାଧାନାଥଯୁଗ କ୍ରମେ ଆସିଲା । ପ୍ରଥମ ମହାଯୁଦ୍ଧର ପରବର୍ତ୍ତୀ ଯୁଗ ଏବର ଆଧୁନିକ ଯୁଗ ଅଟେ । ରୀତିକାଳୀ ସାହିତ୍ୟର କଳ୍ପନାବିଳାସ ପରି ସାରଳା ସାହିତ୍ୟର ଆରମ୍ଭ କଳ୍ପନାବିଳାସୀ ନ ଥିଲା । ସେତେବେଳକୁ ଲିପି ଓ ଭାଷାର ଉନ୍ନତି ହୋଇଥିଲା । ତା ନ ହୋଇଥିଲେ ଏପରି ଗଣସାହିତ୍ୟର ଆରମ୍ଭ ସମ୍ଭବ ହୋଇ ନ ଥାନ୍ତା । ଗଣସାହିତ୍ୟ ଭାବରେ ସାରଳାସାହିତ୍ୟର ପ୍ରତିଷ୍ଠା ଥିଲା । ତାହା ବଙ୍ଗଳାରେ ମଧ୍ୟ ଅନୂଦିତ ହୋଇଥିଲା । ସାରଳାଯୁଗ ଧର୍ମଯୁଗ ନାମରେ କଥିତ । ଗଜପତି କପିଳେନ୍ଦ୍ରଙ୍କ ରାଜତ୍ୱକାଳ । ଲୋକେ ଯୁଦ୍ଧପ୍ରିୟ ଥିଲେ ମଧ୍ୟ ଧର୍ମବିଶ୍ୱାସୀ ଥିଲେ । ସାରଳାଙ୍କ ରାମାୟଣ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ ଏହାର

ପରିପୂର୍ଣ୍ଣ । ପରେ ପଞ୍ଚସଖାଯୁଗର କବିମାନେ ଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହେଲେ । ମାତ୍ର ଏମାନଙ୍କର ବୈଷ୍ଣବଧର୍ମପ୍ରାଣତା ହିଁ ସମ୍ବଳ ଥିଲା । ସେତେବେଳେ ସାହିତ୍ୟ ଓ ଧର୍ମ ଏକ ଥିଲା । ଭାଗବତ ଓ ମହାଭାରତରେ ଧର୍ମଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ସମାଜ କଥା ଲେଖାଯିବା ସମ୍ଭବ ହୋଇଥିଲା । ସାରଳାସାହିତ୍ୟ ପରେ ଅନ୍ୟାନ୍ୟ ପ୍ରଦେଶରେ ରାମ ଓ କୃଷ୍ଣ ଚରିତକୁ କେନ୍ଦ୍ର କରି ଧର୍ମସାହିତ୍ୟମାନଙ୍କର ସୃଷ୍ଟି ହେଲା । ପଞ୍ଚସଖାଯୁଗରେ ଏହା ଚରମ ଅବସ୍ଥା ଲାଭ କରିଥିଲା । ଏତେବେଳେ ସଂସ୍କୃତ-ସାହିତ୍ୟ ଗୌରବାନ୍ୱିତ ଥିଲା । ମାତ୍ର ସାରଳା ବା ପଞ୍ଚସଖାଯୁଗ ତାହା ଦ୍ୱାରା ପ୍ରଭାବିତ ହୋଇନାହିଁ ।

ଏହା ପରେ କାବ୍ୟଯୁଗ । ଏହା ସଂସ୍କୃତ ଦ୍ୱାରା ବିଶେଷ ପ୍ରଭାବିତ । ଭଞ୍ଜ ଓ ଘନକୃଷ୍ଣଙ୍କ ସାହିତ୍ୟ ଯେପରି ଅଭିଧାନକୁ ହାତରେ ଧରି ଲେଖାହୋଇଛି । ପଞ୍ଚସଖା ଯୁଗରେ ରହସ୍ୟମଞ୍ଜରୀ, ଉଷା-ଭିଳାଷ ଆଦି କେତେଖଣ୍ଡି କାବ୍ୟ ଥିଲେ ମଧ୍ୟ ସଂସ୍କୃତର ପ୍ରଭାବ ବେଶି ନ ଥିଲା । ମାତ୍ର କାବ୍ୟଯୁଗର ସାହିତ୍ୟ ସଂସ୍କୃତକୁ ଅନୁକରଣ କରି ଅର୍ଥାଲଙ୍କାର ଓ ଯମକ ଆଦିରେ ପ୍ରଭାବାନ୍ୱିତ ହେଲା । ଭଞ୍ଜ ପ୍ରାୟ ୫୦ ଖଣ୍ଡି ବହି ଲେଖିଛନ୍ତି । ଛନ୍ଦସାହିତ୍ୟ ଓ ଅଳଙ୍କାରବିକାଶ ପାଇଁ ଭଞ୍ଜ ଖୁବ୍ କସରତ୍ କରି କୃତୀ ହୋଇଛନ୍ତି । 'ଦେଖି ନବ କାଳିକା, ବିଭୂଷଣ ପୁଷ୍ପେ' ଆଲୋଚନା କଲେ ଏହା ସ୍ପଷ୍ଟ ପ୍ରମାଣିତ ହୁଏ । ଗୋଟିଏ ଗୋଟିଏ ପଦରୁ ଏକାଧିକ ଅର୍ଥ ଭଞ୍ଜସାହିତ୍ୟର ଆଉ ଏକ ବିଶେଷତ୍ୱ । ଏଠାରେ ଗୋଟିଏ ପଦ ଉଦ୍ଧାର କଲେ ଏହା ସ୍ପଷ୍ଟ ହୋଇଯିବ । ଯଥା—'ଆସାର ସଘନ କାଳ ହେଲା ଉଦୟ, ଅସିତ ପର ପ୍ରବଳ ଦରସମୟ' ।

ଉପେନ୍ଦ୍ରଙ୍କ କୃତିତ୍ୱ ଆଧୁନିକ ଯୁଗରେ ନାହିଁ । ସେତେବେଳେ ଏ ସାହିତ୍ୟ ଆଦୃତ ହେଉଥିଲା । ସେତେବେଳର ଚରିତ୍ରଚିତ୍ରଣ ଓ

ଓ ଅଳଙ୍କାରବିକାଶ । ସେତେବେଳେ ସାହିତ୍ୟର ଉପାଦାନ ଥିଲି— ବାଗ୍‌ଦେବୀ ଉପାସନା । ନାରୀର ଯଥାର୍ଥ ପୂଜା କାବ୍ୟଯୁଗରେ ପ୍ରଧାନ ସ୍ଥାନ ନେଇଥିଲା । ସେ ଯୁଗର ପ୍ରାଚୁର୍ଯ୍ୟହିଁ ଏପରି ସାହିତ୍ୟସୃଷ୍ଟିର ମୂଳରେ ଥିଲା । ଚିତ୍ତବିନୋଦନ ଓ କଳ୍ପନାବିଳାସ ସାହିତ୍ୟର ଲକ୍ଷ୍ୟ ଥିଲା । ଏକ ବିଷୟବସ୍ତୁକୁ ବିଭିନ୍ନ କବି ବିଭିନ୍ନ ପ୍ରକାରରେ ଅବଲମ୍ବନ କରି କାବ୍ୟ ରଚନା କରୁଥିଲେ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଓଡ଼ିଆ ସାହିତ୍ୟ ନୂତନ ରୂପ ନେଲା । ଏହିଠାରୁହିଁ ଗଦ୍ୟ-ସାହିତ୍ୟର ଆରମ୍ଭ ହେଲା । ମାଦଳା-ପାଞ୍ଜି ପ୍ରଥମ ଗଦ୍ୟ-ସାହିତ୍ୟ ବୋଲି କୁହାଯାଏ । ଅଷ୍ଟାଦଶ ଶତାବ୍ଦୀରେ ବ୍ରଜନାଥ ବଡ଼ଜେନାଙ୍କର ହିତୋପଦେଶ ପରି ଚତୁରବିନୋଦ ଗଦ୍ୟରେ ଲେଖାଥିଲା । ପ୍ରାଚୀନ ରଚନା ରୀତି ସୁଧାନିଧି କଳ୍ପ ଜଟିଳ । କାବ୍ୟଯୁଗରେ ଚତୁରବିନୋଦ ଅଦ୍ୱିତୀୟ ଗଦ୍ୟଗ୍ରନ୍ଥ ଥିଲା । ତାଙ୍କର ଗୁଣ୍ଡିଚାବିଜେ, ସମରତରଙ୍ଗ ଓ ଶ୍ୟାମ-ରାସୋତ୍ସବ କାବ୍ୟପୁସ୍ତକ ଅଟେ ।

ଏବେ ମୁଦ୍ରାଯନ୍ତ୍ର ଯୋଗୁଁ ସାହିତ୍ୟ ପ୍ରଚୁର ସୁବିଧାଜନକ ଓ ଦ୍ରୁତ ହୋଇଛି; ମାତ୍ର ଆଗେ ମନ୍ଥର ଥିଲା । ପ୍ରଚୁରର ସୁବିଧା ଦୃଷ୍ଟିରୁ ତାହା ଛାନ୍ଦ ବା ପଦ୍ୟ-ସାହିତ୍ୟ ଥିଲା । ସଙ୍ଗୀତ ମାଧୁରୀ ଓ ପ୍ରଚୁର ସୁବିଧା ଦୃଷ୍ଟିରୁ ଏପରି କରାଯାଇଥିଲା । ସମାଜର ପରିବର୍ତ୍ତନରେ ସାହିତ୍ୟର ପରିବର୍ତ୍ତନ ହୁଏ । ଏହି କାରଣରୁ ଭଞ୍ଜ ଓ କବିସୂର୍ଯ୍ୟଙ୍କ ସାହିତ୍ୟରେ ତାରତମ୍ୟ ଦେଖାଯାଏ । ଗୋପାଳକୃଷ୍ଣଙ୍କ ସାହିତ୍ୟ ଅଧିକ ତାରତମ୍ୟ ସୃଷ୍ଟି କରି ଅତି ସରଳ ଏବଂ ଭାବପ୍ରକାଶକ ହୋଇଛି । ଏବେ ଆହୁରି ଅଧିକ ପରିବର୍ତ୍ତନ ସଂଘଟିତ ହୋଇଛି ।

ଶାସନର ପରିବର୍ତ୍ତନରେ ମଧ୍ୟ ସାହିତ୍ୟର ପରିବର୍ତ୍ତନ ହୁଏ । ଇଂରେଜ ଶାସନରେ ଇଂରେଜୀ ସାହିତ୍ୟର ଆଦର ହେଲା । ସେତେବେଳେ ଇଂରେଜୀ ସାହିତ୍ୟ ବିଶ୍ୱ-ବିଖ୍ୟାତ ଥିଲା । ଏ ଦେଶରେ ସେମାନଙ୍କ ରାଜଶକ୍ତି ଦୃଢ଼ କରିବା ପାଇଁ ସାହିତ୍ୟ ଓ ନିଜ ଭାଷାର ପ୍ରସାର କାମନା କରିଥିଲେ । ସେମାନଙ୍କ ଅସାବଧାନତା ଓ ତ୍ରୁଟି ଯୋଗୁଁ ଆମ ଦେଶରେ ଦୁର୍ଗତି ଓ ଦୁର୍ଭିକ୍ଷ କଷ୍ଟକୁ ଭୁଲାଇବା ପାଇଁ ସେମାନେ ସାହିତ୍ୟ ଓ ଭାଷାର ପ୍ରସାର ବିଶେଷ ଭାବରେ କରିଥିଲେ । ରେଭେନ୍‌ସା ସାହେବଙ୍କ ଅପରିଣାମଦର୍ଶିତା ଯୋଗୁଁ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ହୋଇଥିଲା ଓ ସେହି ଅପକୀର୍ତ୍ତିକୁ ଘୋଡ଼ାଇଦେବା ପାଇଁ ସେ ରେଭେନ୍‌ସା କଲେଜ ପ୍ରତିଷ୍ଠା କରିଥିଲେ । ସାରା ଭାରତରେ ବ୍ୟାପକ ଭାବରେ ଇଂରେଜୀ ସାହିତ୍ୟର ପ୍ରସାର ପାଇଁ ସେମାନେ ବହୁ ଅର୍ଥ ବ୍ୟୟ କଲେ ଓ ମାକ୍‌ଲେ ସାହେବଙ୍କ ଉଦ୍ୟମରେ ଶିକ୍ଷାନୀତି ପରିବର୍ତ୍ତିତ ହୋଇ ଏକ ଜବରଦସ୍ତି ନୀତି ପ୍ରବର୍ତ୍ତିତ ହେଲା । ବଙ୍ଗସାହିତ୍ୟ ସର୍ବାପେକ୍ଷା ଅଧିକ ଲାଭ ଉଠାଇ ଅପୂର୍ବ ପରିବର୍ତ୍ତନ ଆଣିଲା । ଅନ୍ୟ ପ୍ରାଦେଶିକ ସାହିତ୍ୟମାନ ଇଂରେଜୀ ସାହିତ୍ୟ ପ୍ରଭାବରେ ସମୃଦ୍ଧ ହେବାକୁ ଲାଗିଲେ । ପାଦ୍ରୀମାନେ ବାଇବେଲ୍ ଓ ଧର୍ମଗ୍ରନ୍ଥର ଜରିଆରେ ସାହିତ୍ୟ ପ୍ରଚାରରେ ସାହାଯ୍ୟ କଲେ । ପ୍ରାଚ୍ୟ ଉପରେ ପାଶ୍ଚାତ୍ୟ ସାହିତ୍ୟର ବିପୁଳ ପ୍ରଭାବ ପଡ଼ିଲା ଓ ସାହିତ୍ୟର ପରିବର୍ତ୍ତନ ସାଧିତ ହେଲା ।

ଓଡ଼ିଶାରେ ରାଧାନାଥ ଯୁଗ ଏହି ସମୟରେ ଆସିଲା । ରାଧାନାଥ ଆଧୁନିକ ଯୁଗ ଆଣିଛନ୍ତି ବୋଲି କୁହାଯାଏ । କେତେକେ କହନ୍ତି— ଏବେ ମଧ୍ୟ ରାଧାନାଥ ଯୁଗ ଚାଲିଛି । ରାଧାନାଥ କାବ୍ୟଯୁଗର ବିଶେଷ କିଛି ପରିବର୍ତ୍ତନ ଆଣି ନ ଥିଲେ । ନାୟକନାୟିକା ଓ ଚରିତ୍ର-ଚିତ୍ରଣରେ ସେ ବିଶେଷ କିଛି କରି ନାହାନ୍ତି । କେବଳ ଇଂରେଜୀ ସାହିତ୍ୟ ଅନୁକରଣରେ ସେ ସରଳ ସାହିତ୍ୟ ସୃଷ୍ଟି କଲେ । ଶବ୍ଦ ଓ

ଅଳଙ୍କାରବହୁଳତା ପରିହାର ପୂର୍ବକ ତାଙ୍କର ଦରବାର ଓ କେଦାରଗୌରୀ ଆଜି ଗ୍ରୀସ୍ କମ୍ବଦନ୍ତୀର ଅବଲମ୍ବନରେ ଲିଖିତ ହେଲା । କାବ୍ୟଯୁଗ ଓ ରାଧାନାଥଯୁଗ ଏକ କହିଲେ ଚଳେ । ରାଧାନାଥ-ଯୁଗର ବର୍ଣ୍ଣନା ସରଳ ଓ ଅନେକାଂଶରେ ବାସ୍ତବ । ଚିଲିକା, ଉଷା ବର୍ଣ୍ଣନାର ଶବ୍ଦଯୋଜନା ଓ ଚମତ୍କାର ବର୍ଣ୍ଣନା ପରିପାଟୀ ଏହାର ପ୍ରମାଣ ଦିଏ । ପ୍ରକୃତି ବର୍ଣ୍ଣନାରେ ସେ ସିଦ୍ଧହସ୍ତ ଥିଲେ । ସେ ଓଡ଼ିଶାର ପ୍ରକୃତିକୁ ମହାନ୍ କରିଯାଇଛନ୍ତି । ରାଧାନାଥ ଯଦି ଯୁଗସ୍ରଷ୍ଟା ହୁଅନ୍ତି, କେବଳ ଚିଲିକା କାବ୍ୟପାଇଁ ହିଁ ହେବେ । ତାଙ୍କର ଅନ୍ୟଗୁଡ଼ିକ କାବ୍ୟଯୁଗର ଅନୁରୂପ । ଉଷା ଆଇଲଣ୍ଡସ୍ପେନସରୁ ଗୃହୀତ; ମାତ୍ର ଓଡ଼ିଆ ପରିଚ୍ଛଦଶୋଭିତ । ଚିଲିକାର କେତେକାଂଶ ଇଂରେଜି ସାହିତ୍ୟରୁ ମଧ୍ୟ ଗୃହୀତ ହୋଇଛି । ତାଙ୍କ ସମସାମୟିକ ଫକୀରମୋହନ ଯଥାର୍ଥରେ ଯୁଗସୃଷ୍ଟି କରିଛନ୍ତି । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନ କାବ୍ୟ, କ୍ଷୁଦ୍ରକବିତା, ଶିଶୁସାହିତ୍ୟ ଓ ଉପନ୍ୟାସ ସୃଷ୍ଟି କରିଗଲେ । ମାତ୍ର ଏଗୁଡ଼ିକ ଋବାସିମ୍, ଡନ୍ କୁଇକ୍‌ଜୋଟ ବା କମଲକୁମାରୀ ପରି ନୁହେଁ । ଟଲଷ୍ଟୟ ଓ ଅନ୍ୟାନ୍ୟ ସାହିତ୍ୟିକମାନେ ପାଶ୍ଚାତ୍ୟ ଜଗତରେ ବିପ୍ଳବ ଆଣିଲା ପରି ଫକୀରମୋହନ ଓଡ଼ିଆ ସାହିତ୍ୟରେ ନୂତନ ଯୁଗ ସୃଷ୍ଟି କଲେ । ସାମାଜିକ ଉନ୍ନତି ବିଧାନପାଇଁ ସେ ତାଙ୍କ ଲେଖାରେ ସମାଜର ଯଥାର୍ଥ ଚିତ୍ରଣ କରିଥିଲେ । ତାଙ୍କ ପରି କେହି ସଫଳ ଗଦ୍ୟ ରଚନା ଓଡ଼ିଆ ଭାଷାରେ କରିପାରି ନ ଥିଲେ । ତାଙ୍କର ଚରିତ୍ରଚିତ୍ରଣ ସବୁଠାରୁ ଚମତ୍କାର । ଧୂର୍ତ୍ତ ମଙ୍ଗରାଜ, ନିରୀହ ଶାରିଆ ଓ ଭଗିଆଠାରୁ ହରକଲା ଚମାର ବୁଦ୍ଧିରେ ଛଅ ମାଣ ଆଠଗୁଣ୍ଠ ଜମି ଅପହରଣ କଲେ । ଏହି ନାଟକ ଗ୍ରାମ୍ୟଚିତ୍ର ଅନ୍ଧବିଶ୍ୱାସ ଓ କୁସଂସ୍କାରର ପରିଣତିକୁ ସ୍ୱଭାବସିଦ୍ଧହସ୍ତ ଭାବରେ ଫୁଟାଇ ଅଛନ୍ତି । ସାମାଜିକ ସଂଘର୍ଷ ଦେଖାଇ ସେ ନୂତନ ଆଦର୍ଶ ଦେଇଛନ୍ତି । ସାହିତ୍ୟର

ମାଧ୍ୟମ ଓ ଚରିତ୍ର ଦୁଇ ପ୍ରକାର । ଫକୀରମୋହନଙ୍କ ଚରିତ୍ରରେ ଗାଁର ନିଛକ ମଫସଲିଆ ସ୍ଥାନ ପାଇଛନ୍ତି । ରାଧାନାଥଙ୍କ ପାଟଣି କନ୍ୟା ନାୟିକା ଅବା କାବ୍ୟଯୁଗର ରାଧାକୃଷ୍ଣ ନୁହନ୍ତି; ଡମ୍ବା, ମକରା-ମା, ଗୋବରା ଜେନା ଚୌକିଦାର ତାଙ୍କ ସାହିତ୍ୟରେ ସ୍ଥାନ ପାଇଛନ୍ତି । ଆଧୁନିକ ସାହିତ୍ୟ କହିଲେ ଫକୀରମୋହନଙ୍କ ସାହିତ୍ୟକୁ ବୁଝିବାକୁ ହେବ ।

୧୯୦୮, ୧୯୧୩, ୧୯୧୮ରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନ ପରଲୋକ ପାଇଛନ୍ତି । ଏମାନେ ଯେଉଁ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି, ତାହା ରସର ଉଚ୍ଛ୍ୱାସ, ଶିଶୁ ସଙ୍ଗୀତ ଓ ଗ୍ରାମ୍ୟ ଜୀବନର ନିଛକ ଚିତ୍ର ଫୁଟାଇବାରେ ସଫଳତା ଲାଭ କରିଛି । ମଧୁସୂଦନ ବ୍ରହ୍ମବାଦୀ ସାହିତ୍ୟ ସତ୍ତ୍ୱେ 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର', 'ପାହିଲାଣି ଏବେ ରଜନୀ' ଆଦି ଶିଶୁସାହିତ୍ୟ ରଚନା କରି ଯୁଗାନ୍ତର ସୃଷ୍ଟି କରିଛନ୍ତି । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମରେ ସେ ଯାହା ଲେଖି ଯାଇଛନ୍ତି, ଏବର ରାଜନୈତିକ ଯୁଗରେ ତାହା ଭଲେ ହେଲେ କ୍ଷୁଣ୍ଣ ହୋଇନାହିଁ । ମଧୁସୂଦନ ପ୍ରଭୃତିଙ୍କ ସାହିତ୍ୟ ଭିତରେ ପତ୍ରପତ୍ରିକାର ଆବିର୍ଭାବ, ବିଶେଷତଃ ଉତ୍କଳସାହିତ୍ୟର ସମ୍ପାଦନ ଏହାକୁ ଅଧିକ ପରିପୁଷ୍ଟ କରିଥିଲା ।

୧୯୧୪ ପର୍ଯ୍ୟନ୍ତ ପୂର୍ବ ସାହିତ୍ୟିକମାନଙ୍କର ଯୁଗ ଥିଲା । ଶାସନଗତ ଓ ରାଜନୈତିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟ ବଦଳିଲା । ରାଧାନାଥଙ୍କ ପରବର୍ତ୍ତୀ ସାହିତ୍ୟ ଆଧୁନିକ ହୋଇ ରହିଛି । ଏବେ ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ ସାହିତ୍ୟ ଅତ୍ୟାଧୁନିକ ବୋଲି କଥିତ ହେଉଛି । ଏହା ସ୍ୱାଧୀନତା ପରେ ଆରବ୍ଧ ହୋଇଛି ।

ମହାତ୍ମାଗାନ୍ଧୀଙ୍କ ଆନ୍ଦୋଳନ ଫଳରେ ସାହିତ୍ୟର ରୂପରେଖ ବଦଳିଥିଲା । ଗାନ୍ଧୀଜୀଙ୍କ ମତ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ

ନେତୃସ୍ଥାନୀୟ ଲୋକେ ବିଦ୍ୟାଳୟମାନ ଖୋଲି ନୂତନ ଦୃଷ୍ଟିକୋଣରୁ ସାହିତ୍ୟଚର୍ଚ୍ଚା ଆରମ୍ଭ କଲେ । ଗୋପବନ୍ଧୁ ଏହା ପ୍ରବର୍ତ୍ତନ କଲେ । ଏହା ରାଧାନାଥ ଯୁଗର ପରବର୍ତ୍ତୀ । ରାଧାନାଥ-ଯୁଗ ସାହିତ୍ୟର ପରିପୂର୍ଣ୍ଣତା ଆସିଲା ଗୋପବନ୍ଧୁ ଯୁଗରେ । ଗୋପବନ୍ଧୁଙ୍କ ବନ୍ଦୀର ଆତ୍ମକଥା, କାରାକବିତାଦି ଏହାର ନିଦର୍ଶନ । ତାଙ୍କର ସମସାମୟିକ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶଙ୍କ ସାହିତ୍ୟ ଏହାର ପରିଚୟ ଦିଏ । ଦେଶରେ ଅର୍ଥନୈତିକ ଶୋଷଣ, ଶାସନଗତ ଦୋଷ ବିରୁଦ୍ଧରେ ଗୋପବନ୍ଧୁ ଯୁଗ ଯୁଦ୍ଧଘୋଷଣା କଲା । ଓଡ଼ିଶା ପାଇଁ କାନ୍ଦି କାନ୍ଦି ସମସ୍ୟା-ବହୁଳ ଓଡ଼ିଶାରେ ଗୋପବନ୍ଧୁ ସାହିତ୍ୟ ସୃଷ୍ଟି କଲେ । ରାଧାନାଥଯୁଗରେ ସରଳତାଠାରୁ ଏ ଯୁଗର ସରଳତା ବଳିଗଲା । ନୀଳକଣ୍ଠଙ୍କ ଲେଖା ଅତି ସରଳ । ଶୁଷ୍କଦାର୍ଶନିକ ପଣ୍ଡିତ ନୀଳକଣ୍ଠଙ୍କଠାରୁ ପ୍ରାଣପୂର୍ଣ୍ଣ ସରସ ଲେଖା ସମ୍ଭବ ହେଲା । ଅତି ସରଳତା ପ୍ରକାଶ କଲେ ପଣ୍ଡିତ ଗୋଦାବରୀଶ । ଏ ଯୁଗର ସାହିତ୍ୟ ଲୋକଙ୍କୁ ସ୍ପର୍ଶକଲା । ନୀଳକଣ୍ଠଙ୍କ କୁମାରପୂର୍ଣ୍ଣିମା ବର୍ଣ୍ଣନା, ଗୋଦାବରୀଶଙ୍କ କାଳଜାଯ଼ୀ ବର୍ଣ୍ଣନା ଲୋକଙ୍କୁ ନିବିଡ଼ ଭାବରେ ସ୍ପର୍ଶ କରିଥିଲା । ଏ ଯୁଗର ସାହିତ୍ୟ ଓଡ଼ିଆ ସାହିତ୍ୟରେ ନୂତନତ୍ୱ ଆଣିଲା ।

ପାଶ୍ଚାତ୍ୟ ଭୂଖଣ୍ଡରୁ ଯେଉଁ ଚିନ୍ତାଧାରା ଆସିଛି, ତାକୁ ଉପକୂଳ-ବର୍ତ୍ତୀ ଅଞ୍ଚଳ, ବିଶେଷରେ ବଙ୍ଗ ବେଶି ଗ୍ରହଣ କରିଛି । ବଙ୍ଗରେ ଗଠିତ 'ଓରେ ସବୁଜ ଓରେ କାଞ୍ଚା' ଦଳ ପାଶ୍ଚାତ୍ୟ ଭାବଧାରାକୁ ଗ୍ରହଣ କରିବା ପାଇଁ ସଙ୍ଗଠିତ ଅଗ୍ରଗାମୀ ଦଳରୂପେ ଉଦ୍ୟମ କରିଥିଲେ । ଆମ ଓଡ଼ିଶାରେ ତାହାର ଅନୁକରଣରେ ସବୁଜଯୁଗର ଆରମ୍ଭ । ଏହା ଅତି ଆଧୁନିକ ଯୁଗ । ସବୁଜଯୁଗର କବିମାନେ ରାଜନୀତିରେ ଉଦ୍‌ବୁଦ୍ଧ ହେଲେ ।

୧୯୩୯ ପରେ ଅତ୍ୟାଧୁନିକ ଯୁଗରେ ପତ୍ରପତ୍ରିକା ଓ ସାହିତ୍ୟ ବଢ଼ିଯାଇଛି । ସାହିତ୍ୟର ଗତି କଣ ହେବ, କହି ହେଉ ନାହିଁ । ଏବେ ବାସ୍ତବଧର୍ମୀ ଓ ସ୍ୱଭାବଧର୍ମୀ ସାହିତ୍ୟ ଚାଲିଛି । ଅନାହାର ଓ ଦୁଃଖ-ଦୁର୍ଗତିଗ୍ରସ୍ତ ଲୋକଙ୍କ ସମ୍ପର୍କରେ ଆସି ଲେଖକ ଏହା ବ୍ୟତୀତ ଆଉ କି ସାହିତ୍ୟ ସୃଷ୍ଟି କରନ୍ତା ! ଇଂଲଣ୍ଡର ବେଷ୍ଟଲଣ୍ଡ ଉପନ୍ୟାସରେ ମଣିଷକୁ ବନ୍ଧ କରିଅଛନ୍ତି । ସେ ମଣିଷକୁ ମଣିଷ ପରି ବଞ୍ଚିବାର ସୁଯୋଗ ପାଇବା ପାଇଁ ବିପ୍ଳବ କରିବାକୁ ସୂଚନା ଦେଇଅଛନ୍ତି । ଏବେ ଅତ୍ୟାଧୁନିକ ସାହିତ୍ୟରେ ଜୀବନ ସମସ୍ୟାର ବିଶ୍ଳେଷଣ ପୂର୍ବକ ସାହିତ୍ୟ ସୃଷ୍ଟି କରାଯାଉଛି । ଏହା ବ୍ୟତୀତରେକେ ଏହାର ସାହିତ୍ୟିକ ମୂଲ୍ୟ ରହିବ ନାହିଁ । ଚିତ୍ତବିନୋଦନ ଓ କଳ୍ପନାବିଳାସମୂଳକ ସାହିତ୍ୟ ସ୍ଥାନରେ ଗଦ୍ୟ-କବିତା ସ୍ଥାନ ନେଉଛି । ସମସ୍ତେ କହିଥାନ୍ତି—ସ୍ୱଭାବ ଯାହା, କବିତା ସେହିପରି ହେବା ବିଧି ।

ମହାଭାରଣ୍ୟରୁ ତଥା ଆନ୍ତର୍ଜାତୀୟରୁ ଭାବଧାରା ଫୁଟାଇବା ପାଇଁ ସାହିତ୍ୟ ଉଦ୍ଦିଷ୍ଟ ହେଲାଣି । ଆମେରିକାର ଗହମକ୍ଷେତ, ମାଲନଘା ଉପତ୍ୟକାର ବର୍ଣ୍ଣନା ଆମ ସାହିତ୍ୟରେ ଆତ୍ମପ୍ରକାଶ କଲାଣି । ବିଶେଷରେ ଗଦ୍ୟ-କବିତାରେ ଆତ୍ମପ୍ରକାଶ କରୁଛି । କେତେକଙ୍କର ବର୍ଣ୍ଣନା ଅତି ମାମୁଲି ହେବାର ଦେଖାଯାଉଛି । ଦୁଗ୍ଧ ଉପକାରୀ ହେଲେ ମଧ୍ୟ ତା'ର ମାତ୍ରାଗତ ଦୋଷ କ୍ଷତିକାରକ । ଏଥିପାଇଁ ଅବହିତ ହେବାକୁ ହେବ ।

ଓଡ଼ିଆ ସାହିତ୍ୟରେ ଗଦ୍ୟ-ସାହିତ୍ୟ ପ୍ରାଣହୀନ ହେବାର ଦେଖା-ଯାଉଛି । ଉପମା-ଉପମେୟରୁ ନିତାନ୍ତ ଉପରଠାଉରିଆ ହେଲାଣି । "ଜହ୍ନ ଖଦଡ଼ ପରି ଧଳା" ଉପମାର ପ୍ରୟୋଗ ଅସମ୍ଭବ ବୋଧ ହେଉନାହିଁ । ଏହା ସ୍ୱଭାବବାଦୀ ସାହିତ୍ୟ ହୋଇ ନ ପାରେ ।

ଏବେ ପ୍ରାୟ କାବ୍ୟ ଲେଖା ଆଉ ନାହିଁ । ଯାହା ଲେଖାହେଉଛି; ତାହା ଚିରନ୍ତନ ନ ହୋଇ ସାମୟିକ ହେଉଛି । ସାମୟିକ ସାହିତ୍ୟର କେବଳ ତାତ୍‌କାଳିକ ମୂଲ୍ୟ ଥାଏ । ଆଜି ଖାଇବାକୁ ମିଳୁନାହିଁ; କାଲି ମିଳିବ । ଏହା ଉପରେ ସାହିତ୍ୟ ଲେଖିବା ସାମୟିକ; ମାତ୍ର ଚିରନ୍ତନ ନୁହେଁ । ଏପରି କି ସ୍ୱାଧୀନତା ସମସ୍ୟା ଉପରେ ଲିଖିତ ସାହିତ୍ୟ ସ୍ୱାଧୀନତା ପ୍ରାପ୍ତି ପରେ ସାମୟିକ ସାହିତ୍ୟ ହୋଇଯାଉଛି ।

ଏବେ ଡିଟେକ୍‌ଟିଭ୍ ଉପନ୍ୟାସ ସାହିତ୍ୟରେ ବିଶେଷ ସ୍ଥାନ ପାଇଛି । ସମସ୍ୟାମୂଳକ ସାହିତ୍ୟ ନାହିଁ । ଏହି ସାହିତ୍ୟ ପରିପାର୍ଶ୍ୱ ସହିତ ଖାପ ଖୁଆଇ ଲେଖାହେଉଛି ବୋଲି ଯୁକ୍ତି ହେଉଛି । ପୂର୍ବର ସାମାଜିକ ସରଳତା ଏବେ ନାହିଁ । ହତ୍ୟା, ବିଶୃଙ୍ଖଳା ଏବଂ ନୃଶଂସକାଣ୍ଡାଦି ସମାଜରେ ଦେଖାଦେଲାଣି । ଏଥିପାଇଁ ଏହା ପରିପାର୍ଶ୍ୱ ସମ୍ବନ୍ଧିତ ବୋଲି କୁହାହେଉଛି । ମାତ୍ର ଏହା 'ଛମାଣ ଆଠଗୁଣ୍ଠ' ପରି ପରିପାର୍ଶ୍ୱକୁ ନେଇ ରଚିତ ନୁହେଁ । ଏଥିରେ ସାହିତ୍ୟରେ ସୃଜନୀଶକ୍ତି ନଷ୍ଟ ହୋଇ ଯାଉଛି ।

ଏବେ ଛନ୍ଦ ସମସ୍ୟାପ୍ରଧାନ ହୋଇଛି । ଓଡ଼ିଶାର ମୌଳିକ ରୀତିରେ କାବ୍ୟକବିତା ଲେଖାହେବ ନା ମୁକ୍ତଛନ୍ଦରେ ଲେଖା-ହେବ, କହି ହେଉନାହିଁ । ଅନୁସ୍ୱାର ଯୋଗେ ଯୁକ୍ତାକ୍ଷର ଲେଖା ବି ଚଳିଲାଣି । ଭାଷାର ପରିବର୍ତ୍ତନରେ ସାହିତ୍ୟର ପରିବର୍ତ୍ତନ ହୁଏ । ଅତି ଆଧୁନିକ ସାହିତ୍ୟ ସମସ୍ୟା ଉପରେ ଲିଖିତ ହୁଏ । ମାତ୍ର ଏବେ ଅର୍ଥ-ନୈତିକ ଅବସ୍ଥା ଓ ରାଜନୈତିକ ମତବାଦ ଉପରେ ସାହିତ୍ୟ ଲେଖାହେଉଛି । କୃଷକରମଣୀର ଉଦବେଗ ମଧ୍ୟ ସାହିତ୍ୟର ଉପଜୀବ୍ୟ ହେବା ଉଚିତ । ଉତ୍କଳ-ଭାରତୀକୁ ନୂତନ ପରିଚ୍ଛଦ ଦିଆଯାଉ ।

ଏହି ଯୁଗରେ ବହୁଳ ପତ୍ରପତ୍ରିକାର ସୃଷ୍ଟି ହୋଇଛି । ବିଶେଷରେ ଏହା ସମାଲୋଚନାକୁ କେନ୍ଦ୍ର କରି ଲେଖାହେଉଛି । ଏତାଦୃଶ ସମାଲୋଚନା-ସାହିତ୍ୟ ଆରମ୍ଭ ହୋଇଛି କହିଲେ ଚଳେ । ଦଳ ଓ ମତବାଦକୁ ଅନୁସରଣ କରୁଥିବା ଅବସ୍ଥାରେ ଗଦ୍ୟ-ସାହିତ୍ୟର ମାନଦଣ୍ଡ କଣ ହେବ, କହି ହେଉ ନାହିଁ ।

ଏବେ ଷ୍ଟାଣ୍ଡାର୍ଡ (Standard) ଓଡ଼ିଆ ଭାଷାର ଦୁହା ଉଠିଛି । ସମ୍ବଲପୁରୀଭାଷା କଟକରେ ପୂର୍ଣ୍ଣ ବୋଧ ନୁହେଁ । କଟକିଭାଷା ସମ୍ବଲପୁରରେ ମଧ୍ୟ ଦୁର୍ବୋଧ । ସର୍ବବୋଧ ଭାଷାରେ ସାହିତ୍ୟ ସୃଷ୍ଟି ହେଉ ବୋଲି କେହି କେହି ଦୁହା ଉଠାନ୍ତି । ଯଥାସମ୍ଭବ ମୌଳିକତା ରକ୍ଷା କରିଯାଇ ସମାଜର ସମସ୍ୟା ଉପରେ ଚିରନ୍ତନ ସାହିତ୍ୟର ଦୃଷ୍ଟି-କୋଣରୁ ଲେଖାଲେଖି ହେଉ । ଏଥେଲୋ ନାଟକ ଓ ଡେଜାର୍ଟେଡ୍ ଭିଲେଜ୍ ଆଜି ମଧ୍ୟ ଚିରନ୍ତନ ସାହିତ୍ୟ । କାଳିଦାସଙ୍କ ମେଘଦୂତ ଚିରନ୍ତନ ହୋଇ ରହିଛି ।

ଏବେ ସାହିତ୍ୟିକଙ୍କ ଅଧିକାର ଦାବୀ ସମ୍ପର୍କରେ ପ୍ରଶ୍ନ ଉଠେ । ସତ୍ୟ ଶିବ ଓ ସୁନ୍ଦର ଉପରେ ସାହିତ୍ୟ ସୃଷ୍ଟି ହେଲେ ଅଧିକାର ଦାବୀର ପ୍ରଶ୍ନ ନାହିଁ । ରାଜନୈତିକ ପ୍ରଭାବର ବଶବର୍ତ୍ତୀ ହୋଇ ଏହା କରାଯାଇଥାଏ । ଜଣେ ଇଂରେଜ କବିଙ୍କ ଉକ୍ତି ହେଉଛି—'ଯେ ରୁଟି ନ ଖାଇ ଶୋଇ ନାହିଁ, ସେ ପ୍ରକୃତ କବି ହୋଇ ପାରିବ ନାହିଁ ।'

ହୁଇଟମ୍ୟାନ୍ ତାଙ୍କ ସାହିତ୍ୟ ଯୋଗୁଁ ଆମେରିକାରେ ପ୍ରଥମେ ଅବହେଳିତ ହୋଇଥିଲେ; ମାତ୍ର ପରେ ସେ ଆଦୃତ ହୋଇଥିଲେ । ଏଣୁ ସାହିତ୍ୟିକର ଅଧିକାର ବିଚାର ବର୍ତ୍ତମାନର କାଳ ଉପରେ କରାଯାଇ ନ ପାରେ ।

ସାହିତ୍ୟରେ ଅଶ୍ଳୀଳତା ବୋଲି ଚିତ୍କାର କରାଯାଉଛି । ସାହିତ୍ୟରେ ଶ୍ଳୀଳ ଓ ଅଶ୍ଳୀଳ ବୋଲି କିଛି ନାହିଁ । କଳାକାରର ଫୁଟାଇବା କଳାକୁ ବୁଝି ନ ପାରି ଏପରି କୁହାହୋଇଥାଏ । ଯାହା ଅଶ୍ଳୀଳ ବୋଲି ସର୍ବଜନସମର୍ଥିତ, ତାହା ବର୍ଜନୀୟ ହେଉ । ଶ୍ଳୀଳ ଓ ଅଶ୍ଳୀଳ ସାହିତ୍ୟର ବିବାଦ ପ୍ରକୃତ ବିବାଦ ନୁହେଁ । ଏହା ଭାବପ୍ରବଣତା । ରାଜନୈତିକ ମତଭେଦ, ବ୍ୟକ୍ତିଗତ ବିଦ୍ୱେଷ ଓ ଗୋଷ୍ଠୀମନୋଭାବଯୋଗୁଁ ଏପରି ସମାଲୋଚନା ହୋଇଥାଏ । ଜଳ ନିଜର ଧର୍ମ ନ ଭୁଲିଲି ଭଳି ପ୍ରତ୍ୟେକେ ବିଶ୍ୱସାହିତ୍ୟର ପରିଚୟରେ ଆସିଲେ ମଧ୍ୟ ନିଜ ଧର୍ମକୁ ତ୍ୟାଗ କରିବା ଉଚିତ ନୁହେଁ । ପରିମିତିରେ ଯାହା ଅଛି, ଯାହା ସୁସ୍ଥ ଓ ସମୃଦ୍ଧ, ତାହା ସାହିତ୍ୟରେ ସ୍ଥାନ ପାଇବା ଉଚିତ । ସମାଜତାନ୍ତ୍ରିକ ଦୃଷ୍ଟିରୁ ପ୍ରଥମ ସାହିତ୍ୟର ମାନ ନିର୍ଦ୍ଦିଷ୍ଟ ହୋଇଥିଲା । ଏବେ ମଧ୍ୟ ସେହି ସମାଜର କଲ୍ୟାଣ ସାଧନ କ୍ରିୟାରେ ସାହିତ୍ୟ ସଂଯୁକ୍ତ ହେବା ଉଚିତ । ଆଶା, ଆଧୁନିକ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ ତାଦୃଶ ଅନୁକୂଳ ସୁସ୍ଥ ପୃଷ୍ଠଭୂମି ଗ୍ରହଣ କରିବ ।



# ଶିଶୁ ପ୍ରାଣର ସୌନ୍ଦର୍ଯ୍ୟ ଓ ଭକ୍ତକବି ମଧୁସୂଦନ

ଭକ୍ତକବି ମଧୁସୂଦନ ଆଧୁନିକ ସାହିତ୍ୟର ଯୁଗପ୍ରବର୍ତ୍ତକମାନଙ୍କ ମଧ୍ୟରେ ଅନ୍ୟତମ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅର୍ଥାତ୍ ୧୮୫୩ ରେ ମଧୁସୂଦନଙ୍କର ଆବିର୍ଭାବ ହୋଇଥିଲା । ମଧୁସୂଦନ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଂଶ ଶତାବ୍ଦୀର ପ୍ରଥମ ଯୁଗଧର ଆଜୀବନ ଉତ୍କଳ-ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ ସମୟକୁ ସଂସ୍କୃତ ସାହିତ୍ୟରୁ ବହୁ ଉପାଦାନ ଗ୍ରହଣ କରି ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ସୁଦୃଢ଼ ଏବଂ ଆଧୁନିକ ଭାବଧାରା ସହିତ ଜଡ଼ିତ ହୋଇ ସାରିଥିଲା । ଏ ମଧ୍ୟରେ ଇଂରେଜୀ ଶାସନ ଅମଳରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଭାରତୀୟ ବିଭିନ୍ନ ପ୍ରାଦେଶିକ ସାହିତ୍ୟରେ ଦେଖାଦେଇଥିଲା ଏବଂ ପାଶ୍ଚାତ୍ୟ ସାହିତ୍ୟ ଧାରାର ଅନୁକରଣରେ କାବ୍ୟ, କବିତା, ଉପନ୍ୟାସ, ନାଟକ, ପ୍ରବନ୍ଧ ପ୍ରଭୃତି ଲିଖିତ ହୋଇ ଆଧୁନିକ ରୂପପ୍ରାପ୍ତ ହୋଇଥିଲା । ମଧୁସୂଦନଙ୍କ ଲେଖନୀରେ ନାଟକ, ଉପନ୍ୟାସ କିମ୍ବା ମହାକାବ୍ୟ ଜନ୍ମଲାଭ କରି ନ ଥିଲେ ହେଁ ମଧୁସୂଦନ ଯେଉଁ କବିତା, ଗୀତ-ସଙ୍ଗୀତ, ସତ୍ୟସଙ୍ଗୀତ ରଚନା

କରିଯାଇଛନ୍ତି, ତାହା ହିଁ ଉତ୍କଳସାହିତ୍ୟ ଆକାଶର କୋଟି କୋଟି ଝଲିବନ୍ତ ଅସ୍ତମ୍ଳାନ ତାରକା । ବିଶୁଦ୍ଧ, ପରିମାର୍ଜିତ, ଭାବଗର୍ଭକ ଗଦ୍ୟପ୍ରବନ୍ଧ ରଚନାରେ ମଧୁସୂଦନ ସିଦ୍ଧହସ୍ତ ଥିଲେ ଏବଂ ତାଙ୍କ ଦୀର୍ଘ ପଚାଶ ବର୍ଷର ସାହିତ୍ୟ-ସାଧନାର କେବଳ ଗୋଟିଏ ବିଭାଗ ଦ୍ୱାରା ଉତ୍କଳ-ସାହିତ୍ୟ ଶରୀରକୁ ପାଇଁ ସୌନ୍ଦର୍ଯ୍ୟପୂର୍ଣ୍ଣ ଓ ପ୍ରାଣବନ୍ତ ହୋଇଛି, ତାହା ଯଥାର୍ଥରେ ଭକ୍ତକବିଙ୍କର ଅନନ୍ତ ବିଶ୍ୱଭକ୍ତି ଓ ଜୀବନ-ପ୍ରୀତିର ସଙ୍କେତ ।

ଏହି ପ୍ରବନ୍ଧରେ କେବଳ ମଧୁସୂଦନଙ୍କ ସାହିତ୍ୟ-ସାଧନାର ଗୋଟିଏ ବଳିଷ୍ଠ ଦିଗ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରାଯାଇଛି । ତାହା ହେଉଛି ଭକ୍ତକବିଙ୍କର ବିଶାଳ ସାହିତ୍ୟ-ସୃଷ୍ଟିରେ ଶିଶୁପ୍ରାଣର ପ୍ରାଚୁର୍ଯ୍ୟ ଓ ଶିଶୁପ୍ରାଣର ଅକୃତ୍ରିମ ପ୍ରକାଶ ।

କୌଣସି ସାହିତ୍ୟରେ ଶିଶୁସାହିତ୍ୟ ବୋଲି ଗୋଟିଏ ବିଭାଗ ନ ଥାଏ ବା ଏହି ଶ୍ରେଣୀବିଭାଗ କରିବା କବିତାର ଲକ୍ଷ୍ୟ ନୁହେଁ । କେବଳ ଶିଶୁପ୍ରାଣର ତରଳ ସରଳ ଭାବ ମୁଖାପେକ୍ଷୀ ଓ ଶିଶୁହୃଦୟର ଅନନ୍ତ ବିକାଶର ଅନୁକୂଳ ଅପେକ୍ଷାକୃତ ସହଜ ଓ ଶ୍ରୁତିମଧୁର ସାହିତ୍ୟ ଆବଶ୍ୟକ ହୁଏ । ଶିଶୁଶିକ୍ଷା ମନଲାଖି ରଚନା ଶିଶୁପ୍ରାଣକୁ ସ୍ୱତଃ ତରଙ୍ଗାୟିତ କରିବା ଭଳି ପଦ୍ୟାବଳୀ ଶିଶୁପ୍ରାଣରେ ଅନନ୍ତ ସୌନ୍ଦର୍ଯ୍ୟ ଉଦ୍ରେକକାରୀ ।

ଓଡ଼ିଆ ସାହିତ୍ୟରେ ଶିଶୁସୁଲଭ ରଚନା ଯେ ପୂର୍ବକାଳରେ ନ ଥିଲା, ତାହା ନୁହେଁ । ଆଧୁନିକ ପାଠଶାଳାମାନଙ୍କରେ ଶିକ୍ଷା ପ୍ରବର୍ତ୍ତିତ, ଗୃହୀତ ଓ ପ୍ରଦତ୍ତ ହେବା ପୂର୍ବେ ଗ୍ରାମ୍ୟ ଚଟଶାଳୀରେ ମଧ୍ୟ କୋଇଲି, ଗୋପୀଭାଷା ଓ କଳାକଳେବର କହ୍ନାଇ ପ୍ରଭୃତି ସରଳ ତରଳ ପଦ୍ୟାବଳୀ ଦ୍ୱାରା ହେଉଥିଲା । 'କୋଇଲି କେଶବ ଯେ ମଥୁରାକୁ ଗଲା,

କାହ୍ନାବୋଲେ ଗଲ୍ପ ପୁନ ବାହୁଡ଼ ନଇଲ ଲେ କୋଇଲି ର ଅନନ୍ତ ମୂର୍ଚ୍ଛନା ଶିଶୁର ଅଖଣ୍ଡ ପ୍ରାଣରେ ଯେଉଁ ସରଳ-ତରଳ-କୁହୁକ-ମାଧୁରୀ ରଚନା କରୁଥିଲା, ତାହା ହିଁ ଆମ ଦେଶରେ ଶିଶୁସଙ୍ଗୀତଗୁଡ଼ିକର ପ୍ରାଣଉପଯୋଗୀ ରଚନା ଥିବାର ପ୍ରମାଣ । ଶିଶୁର ପ୍ରୟୋଜନ ଦୃଷ୍ଟିରୁ କୋଇଲି କବା ଗୋଟାପିଭାଷା ଗ୍ରହଣଯୋଗ୍ୟ ହୋଇ ନ ପାରେ । ମାତ୍ର ତାହାକୁ ଆବୃତ୍ତି କରି ପୁରପଲ୍ଲୀର କୁମାର-କୁମାରୀମାନେ ଯେ ନିର୍ଦ୍ଦୋଷ ଆନନ୍ଦ ଉପଲବ୍ଧି କରିଥାନ୍ତି ଓ ତାହା ସଙ୍ଗେ ସଙ୍ଗେ ତାହାରି ମାଧ୍ୟମରେ ସେମାନଙ୍କର ବର୍ଣ୍ଣମାଳା ଶିଖିବା ସମ୍ଭବ ହୋଇଥାଏ, ଏହା ସୁନିଶ୍ଚିତ କଥା । ରଚନାର ନୂତନ ଢଙ୍ଗ, ଶୈଳୀର ସରଳତା, ପ୍ରକାଶରେ ସହଜତା ଓ ସରଳତା, ଶିଶୁସାହିତ୍ୟରେ ଆଦୃତ, କଠିନ ଶବ୍ଦମାଳା କିମ୍ବା କ୍ଲିଷ୍ଟଭାବ ଶିଶୁ ପକ୍ଷରେ ବୋଧଗମ୍ୟ ସହଜ ବ୍ୟାପାର ନୁହେଁ । ପୁଣି ଶିଶୁର ମାନସିକ ଅବସ୍ଥା ପ୍ରତି ପ୍ରଣିଧାନ ଦେବା ସର୍ବଥା ଆବଶ୍ୟକ । ଶିଶୁର ମାନସିକ ସ୍ତର ଗ୍ରହଣ କରିବା ଭଳି ଶିଶୁସାହିତ୍ୟ ଲେଖାହେବା ଉଚିତ । ଶିଶୁସାହିତ୍ୟର ଲକ୍ଷ୍ୟ ଶିଶୁପ୍ରାଣର ସୌନ୍ଦର୍ଯ୍ୟ ଉଦ୍‌ଘାଟନ କରି ଶିଶୁର ସମ୍ମୁଖରେ ଏକ ମହାଗ୍ରହଣଯୋଗ୍ୟ ଆଦର୍ଶ ଉପସ୍ଥାପିତ କରିବା । ପାଠ୍ୟପୁସ୍ତକ ଉପରେ ଶିଶୁ ତାହା ପଢ଼ିପାରେ ଏବଂ ଆବୃତ୍ତି କରିପାରେ, ମାତ୍ର ତାର ଅନ୍ତର୍ନିହିତ ପ୍ରଭାବ ଶିଶୁର ଜୀବନ ଉପରେ ପତିତ ହୋଇଥାଏ । ଶିଶୁସାହିତ୍ୟରେ ଶବ୍ଦବିନ୍ୟାସ କାବ୍ୟିକ ଯୋଗ୍ୟତା ଯେତେ ବିଚାର୍ଯ୍ୟ ନୁହେଁ, ସେଥିରେ ଶିଶୁର ଜୀବନ ସତ୍ୟ ପ୍ରତିଫଳିତ ହୋଇଛି କି ନାହିଁ, ତାହା ଦେଖିବାର କଥା । କଠିନ ଶବ୍ଦ ସତ୍ତ୍ୱେ ଅନେକ ସମୟରେ ରଚନା ବା କବିତା ଶିଶୁର ପ୍ରାଣକୁ ସ୍ପର୍ଶ କରିଥାଏ । ସେ ଯାହାହେଉ, ଶିଶୁସାହିତ୍ୟର ଭୂମିକା ଦେବା ଏ ପ୍ରବନ୍ଧର ଲକ୍ଷ୍ୟ ନୁହେଁ । ମାତ୍ର ଓଡ଼ିଆ ସାହିତ୍ୟର ନୀତି ଶିକ୍ଷକ ସତ୍ୟଦ୍ରଷ୍ଟା, ଋଷିପ୍ରତିମ ବ୍ରାହ୍ମ ଉପାସକ କବି ମଧୁସୂଦନଙ୍କ ଲେଖାମାନରେ ଗୋଟିଏ ଧାରାରେ

ବସ୍ତୁଶିଶୁର ସୌନ୍ଦର୍ଯ୍ୟ ଉପରେ ରୂପାୟିତ ହୋଇଛି, ତାହା ହିଁ ଏହାର ପ୍ରତିପାଦିତ ବିଷୟବସ୍ତୁ । ମଧୁସୂଦନଙ୍କ ବେଳକୁ ସାହିତ୍ୟ ଶିଶୁର ମନରେ ଦେଶର ଶିକ୍ଷା ପ୍ରଦାନ ପ୍ରଚଳିତ ହୋଇ ସାରଲାଣି । ଆଧୁନିକ ରୀତିରେ ଶିକ୍ଷାର ପ୍ରବର୍ତ୍ତନ ସଙ୍ଗେ ସଙ୍ଗେ ଶିଶୁସାହିତ୍ୟର ଧାରା ଆମ ଦେଶରୁ ପ୍ରାୟ ଲୁପ୍ତ ହୋଇଗଲା । କେହି ତ ଆଉ ଗୁଣ୍ଡସାଗର, ଗୋପୀ-ଭାଷାରୁ ପାଠ ଆରମ୍ଭ କରେ ନାହିଁ । ବିଶେଷତଃ ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଏହି ରଚନା ନିଷିଦ୍ଧ । ଶିଶୁମାନଙ୍କର ମାନସିକ କସରତକୁ ହ୍ରାସ କରିବା ପାଇଁ ସବୁବେଳେ 'ଶିଶୁବର୍ଦ୍ଧିଷ୍ଣୁ' । ପ୍ରତିମୁହୂର୍ତ୍ତରେ ତାର ବିକାଶ ହେଉଛି । ସେହି ବିକାଶରେ ହିଁ ତାର ଜୀବନ ଉନ୍ମେଷ ହେଉଥାଏ ଏବଂ ଏହି ଉନ୍ମେଷରୁ ହିଁ ତାର ବିଶାଳ ମାନବିକତାର ପରିସ୍ଫୁରଣ । ତେଣୁ ଶିଶୁସାହିତ୍ୟର ଦାୟିତ୍ୱ ବିଶେଷ ।

ଓଡ଼ିଶାର ଆଧୁନିକ ପାଠ୍ୟପୁସ୍ତକ ଏବଂ ଶିଶୁସାହିତ୍ୟରାଜ୍ୟରେ ମଧୁସୂଦନଙ୍କ ଲେଖନୀ ଯେପରି ପରିବର୍ତ୍ତନ ଆଣିଅଛି, ଏହା ସ୍ୱୀକାର୍ଯ୍ୟ । ରାଧାନାଥଙ୍କର ସୌନ୍ଦର୍ଯ୍ୟପୂଜା, ମଧୁସୂଦନଙ୍କର ଜୀବନପୂଜା ଏବଂ ଫକୀରମୋହନଙ୍କର ସମାଜଉପାସନା ଚିରଦିନ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶକ ବୋଲି କୁହାଯାଇପାରେ । ରାଧାନାଥଙ୍କର 'ଚିଲିକା', ମଧୁ-ସୂଦନଙ୍କର 'ଜୀବନ ଚିନ୍ତା', ଫକୀରମୋହନଙ୍କର 'ଛମାଣ ଆଠଗୁଣ୍ଠ' ଏହି ଉକ୍ତିର ପ୍ରମାଣ ।

ମଧୁସୂଦନଙ୍କ ସାହିତ୍ୟକୁ ସାଧାରଣତଃ ଭାବନାତ୍ମକ, ବର୍ଣ୍ଣନାତ୍ମକ, ଆଦର୍ଶ ନୀତିମୂଳକ ଓ ଶିଶୁଗୀତିକା—ଏପରି ଭାବରେ ବିଭକ୍ତ କରାଯାଇ ଥାଏ । ସେହି ସମସ୍ତ ଶିଶୁଗୀତିକାରେ ମଧୁସୂଦନର କବିଜୀବନର ଯାଥାର୍ଥ୍ୟ ମୁଦ୍ରାଙ୍କିତ ହୋଇଯାଇଛି । ଅବଶ୍ୟ ଏହା ବୋଲିବା ମଧୁସୂଦନଙ୍କର ଅନ୍ୟାନ୍ୟ ଲେଖାରେ ଏକ ତୁଙ୍ଗ ଆଦର୍ଶଗତ ଜୀବନର ସଙ୍କେତ ଓ

ମୂଲ୍ୟବୋଧ ଯେ ନାହିଁ, ତାହା ନୁହେଁ । ଏହି ଶିଶୁଗୀତିକା ମଧ୍ୟରେ ତାଙ୍କର ରଚନା 'ପରମେଶ୍ୱର' 'ସ୍ତବ', 'ସୁନ୍ଦର ସଂସାର', 'ପ୍ରଭାତ', 'ସନ୍ଧ୍ୟା' ଓ 'ଉତ୍କଳର ବର୍ଣ୍ଣନାବଳୀ, ସଜ ପରିଚର୍ଯ୍ୟା, ବିଦ୍ୟାଶୀଳତା ପ୍ରଭୃତି ପ୍ରଧାନ ବୋଲି ପରିଗଣିତ ।

ଶିଶୁର ବୟସ ଅତି କୋମଳ । ତାର ହୃଦୟ ପଦ୍ମପତ୍ରପରି ଢଳ ଢଳ । ପ୍ରଭାତର ପଦ୍ମ ପରି ଶିଶୁଚିତ୍ତ ବିକାଶୋନ୍ମୁଖୀ । ସେଥିରେ ଯୌବନର ସ୍ପର୍ଶ ନାହିଁ, ତାରୁଣ୍ୟର ଭାବପ୍ରବଣତା ନାହିଁ କି ବାର୍ଦ୍ଧକ୍ୟର ଚିନ୍ତା ନାହିଁ । ସେଥିରେ ଅମୃତ-ଜୀବନର ଅନନ୍ତ ସ୍ପନ୍ଦନ ଓ ଅସୀମ ବିକାଶସତ୍ତା ନିହିତ ।

ଆକାଶ ଦିଶେ କି ସୁନ୍ଦର
ତାହାକୁ ରଚିଲେ ଈଶ୍ୱର ।
କିଂବା
ବିହଙ୍ଗ ସଂଗୀତ ବାଳକେ ଗାଅ ଆନନ୍ଦ ମନେ
ହୃଦୟେ ସ୍ମର ଜଗତପିତା ସୃଷ୍ଟି କାରଣେ ।
କିଂବା
ବାଳକ ବାଳିକା ଧରିଣ ଚୁଙ୍ଗୁଡ଼ି
ଫୁଲ ତୋଳୁଛନ୍ତି ଦଉଡ଼ି ଦଉଡ଼ି ।

ଉପରୋକ୍ତ ପଦାବଳୀରେ ଶିଶୁହୃଦୟର ସୌନ୍ଦର୍ଯ୍ୟ ପୂର୍ଣ୍ଣିମାଶଶି ଉଦ୍-ଭାସିତ ସମୁଦ୍ରଭୁଲ୍ୟ ଉଚ୍ଛ୍ୱସିତ ।

ଶିଶୁ-ହୃଦୟରେ ଯେଉଁ ନୈସର୍ଗିକ ଭାବବୃତ୍ତି ନିହିତ, ତାହାହିଁ ବିକ ଶିଶୁଗୀତିକାମାନଙ୍କରେ ଦେଖାଇ ଅଛନ୍ତି । ସାହିତ୍ୟିକ, ସୁକବି ମଧୁସୂଦନ ଯେ ଏକ ମନ୍ତ୍ରଦ୍ରଷ୍ଟା ଓ ଉପଦେଷ୍ଟା ସୋପାନରେ ରହି ବରାବର ଚପଳ-

ମତି ଶିଶୁକୁ ଶିକ୍ଷା ଦେଉଛନ୍ତି ଓ ଶିଶୁର ନିଭୃତ ଚିତ୍ତରାଜ୍ୟର ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ଅନ୍ୟମାନଙ୍କୁ ସୁବିଧା ଦେଉଛନ୍ତି, ଏହା ତାଙ୍କର ଅନେକାଂଶ କବିତାରୁ ପ୍ରତିପାଦିତ । ବର୍ଣ୍ଣମାଳାଠାରୁ ଆରମ୍ଭକରି ଉଚ୍ଚ କଠିନ ସାହିତ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ କବିତାରେ ମଧୁସୂଦନ ହାତ ଦେଇଥିଲେ । ଶିଶୁର ସରଳ ପ୍ରାଣ ଓ ଅନାବିଳ ହୃଦୟ-ପ୍ରୀତିରେ ନିଜେ ସେପରି ଭକ୍ତକବି ବନ୍ଧିଲ । ଶିଶୁଜୀବନର ଅସୀମ ଅନୁଭୂତିର ଅବ୍ୟକ୍ତ ଆହ୍ୱାନରେ ଭକ୍ତକବି ଅନୁପ୍ରାଣିତ । ଶିଶୁ ହୃଦୟରେ ସତ୍ୟବାଣୀ ସଂଗ୍ରହ କରିବା ପାଇଁ ମଧୁସୂଦନ ସତତ ଚେଷ୍ଟିତ । 'ସ୍ତବ' କବିତାଟି ମଧୁସୂଦନଙ୍କ ପରିକଳ୍ପିତ ଶିଶୁସଂସାରର ମର୍ମବାଣୀ । ଏହି କବିତା-ଟିରେ ପ୍ରତ୍ୟେକ କ୍ଷଣରେ ଯେପରି ଶିଶୁ ସ୍ୱର୍ଗତ ଦେବତାର ପଥ ସ୍ପର୍ଶ କରୁଛନ୍ତି । ମଧୁସୂଦନ ଶିଶୁ ସମ୍ମୁଖରେ ଠିଆହୋଇ କୌଣସି ସତ୍ୟ ପ୍ରତି ସମସ୍ତଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ ଦେଉଅଛନ୍ତି ।

'ପ୍ରଭାତ' କବିତାରେ କବି ଶିଶୁ-ହୃଦୟର ଲୁକ୍କାୟିତ ସତ୍ୟକୁ ବିଶ୍ଳେଷଣ କରି ମନୋଜ୍ଞ ଭାଷାରେ ରୂପାୟିତ କରୁଛନ୍ତି ।

ବିହଙ୍ଗେ ଗାଇଲେ ସଂଗୀତ ଆହା କି ମନୋହର<br>
ସେ ଗୀତ ଶ୍ରବଣେ ହୃଦୟ ନାଚି ଉଠେ ମୋହର ।

ସାମାନ୍ୟ କଣ୍ଟକ କିମ୍ବା ପାଦପ ଲତାର ପତ୍ରାବଳୀ ଦର୍ଶନରେ ସମୀରଣ ପ୍ରବାହରେ, ତାରକାର ପ୍ରସ୍ଫୁରଣରେ, ସୂର୍ଯ୍ୟ ଓ ଚନ୍ଦ୍ରର ଆତ୍ମପ୍ରକାଶରେ କବି ଶିଶୁମନକୁ ଭଗବତ୍ କୃପାରେ ରସାଣିତ କରି ଦେଇଛନ୍ତି । ପ୍ରକୃତିର ପ୍ରତ୍ୟେକ ବିକାଶ ମୂଳରେ ଭଗବତ୍ ପ୍ରେରଣା ନିହିତ । ଭକ୍ତକବି ମଧୁସୂଦନ ରହସ୍ୟାଚ୍ଛାଦିତ ବିଶ୍ୱକୁ ଭକ୍ତି ଗଦ୍‌ଗଦ ଚିତ୍ତରେ ଗ୍ରହଣକରି ଅନ୍ୟମାନଙ୍କର, ବିଶେଷତଃ ଶିଶୁମାନଙ୍କର ଦୃଷ୍ଟି

ସେଥିପ୍ରତି ଆକୃଷ୍ଟ କରିଅଛନ୍ତି । ଶିଶୁମେଳରେ ମଧୁସୂଦନ ଯେପରି ସ୍ୱର୍ଗର ଦେବଦୂତ । ଶିଶୁପ୍ରାଣର ଆନନ୍ଦ-ଆହ୍ୱାନ ତାଙ୍କର ଋଷିପ୍ରାଣରେ ଝଙ୍କାର ତୋଳିଅଛି ।

ବନ ଅନ୍ତେ ଗତି ଆସେ ତାହାଙ୍କ ବିଧାତନ
ସ୍ମର ସେ ବିଧାତାଙ୍କୁ ଆହେ ଶିଶୁମାନେ,
କର ଯୋଡ଼ି କର ଏବେ ସୁଧାରି ବନ୍ଦନ
ବୋଲି ଧନ୍ୟ ଧନ୍ୟ ପ୍ରଭୁ ଭୁବନ-କାରଣ ।

ଅଧିକାଂଶ କବିତାରେ ମାତ୍ର ଛଳରେ ହେଉ ଅବା ବର୍ଣ୍ଣନାର ଅଭି-ବ୍ୟକ୍ତିରେ ହେଉ, ବ୍ରହ୍ମବାଦୀ ମଧୁସୂଦନ ଶିଶୁମାନଙ୍କୁ ସମ୍ବୋଧନ କରୁଅଛନ୍ତି । ଶିଶୁଠାରୁ ବାଳକବାଳିକା, କୁମାରକୁମାରୀଗଣ ଆଖ୍ୟାନରେ ପୃଥିବୀର ଶିଶୁମଣ୍ଡଳ ଯେପରି ପ୍ରତିଭାତ । ଋତୁବର୍ଣ୍ଣନା, ପ୍ରକୃତିବର୍ଣ୍ଣନା ଏବଂ ଅନ୍ୟାନ୍ୟ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ ମଧୁସୂଦନଙ୍କ କବି-ହୃଦୟ ଅସୀମ ଆନନ୍ଦରେ ଉଚ୍ଛ୍ୱଳିତ ହୋଇ ଯାଇଛି । ମଧୁସୂଦନ କେବଳ ନିଜେ ପ୍ରକୃତି ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ନାହାନ୍ତି, ଅଗ୍ରଦୂତ ସଦୃଶ ଶିଶୁ-ମଣ୍ଡଳୀକୁ କବି ମଧୁସୂଦନ କାକଳିମୁଖର ରସାଳ କୁଞ୍ଜରେ ପଥ-ପ୍ରଦର୍ଶନ କରାଇ ଅଛନ୍ତି । ଓଡ଼ିଆ ସାହିତ୍ୟରେ ମଧୁସୂଦନଙ୍କର ଛ'ଋତୁ ବର୍ଣ୍ଣନା ପ୍ରତିନିଧିମୂଳକ । ପ୍ରାଚୀନ କାବ୍ୟଯୁଗର ଋତୁବର୍ଣ୍ଣନା ଅପେକ୍ଷା ମଧୁସୂଦନଙ୍କ ଋତୁବର୍ଣ୍ଣନା ଯେ ଅଧିକ ଉପଭୋଗ୍ୟ ଓ ହୃଦୟଗ୍ରାହୀ, ଏଥିରେ ସନ୍ଦେହ ନାହିଁ । ଏହି ଋତୁବର୍ଣ୍ଣନାର ଗ୍ରାହ୍ୟତା କି ବୃଦ୍ଧ, କି ଶିଶୁ, କି ଯୁବକ, ବୟସ ଓ ଭାବ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ପ୍ରଣିଧାନ୍ୟ । ଏହି ବର୍ଣ୍ଣନା ପର୍ଯ୍ୟାୟରେ ପ୍ରକୃତିର ମୁକ୍ତ ସୌନ୍ଦର୍ଯ୍ୟ ଅଧିଷ୍ଠିତ । ଏଥିରେ ଭଗବତ୍ ଚିନ୍ତା ପ୍ରୋତ୍ଥିତ ଓ ଜୀବନବିଳାସ ସତ୍ତା ନିହିତ । ତେବେ ଏହି ବର୍ଣ୍ଣନାମୂଳକ କବିତାଗୁଡ଼ିକରେ ଶିଶୁପ୍ରାଣର ସୌନ୍ଦର୍ଯ୍ୟ

ଯେପରେ ପ୍ରକଟିତ, ତାହା ଏଠାରେ ଆଲୋଚନା କରାଗଲା । ବସନ୍ତଋତୁର ଆଗମନ । ସୌନ୍ଦର୍ଯ୍ୟ-ତରଙ୍ଗରେ ଶିଶୁଅଙ୍ଗ ପଲ୍ଲବିତ ।

ଶିଶୁଗଣ ଏବେ ହରଷେ ରତ,
ଫୁଲ ଉପବନେ ବୁଲି ସତତ ।
କୁହୁ ପରା ମୁଖରେ ବୋଲ
ଧରି ପ୍ରଜାପତି କୁସୁମ ତୋଳ ।
ନାନାରଙ୍ଗେ ଖେଳି ତରୁ ତଳରେ,
କରନ୍ତି ସଂଗୀତ ଆନନ୍ଦ ଭରେ ।

ବସନ୍ତ ସୌନ୍ଦର୍ଯ୍ୟ ପ୍ଲାବନରେ ଶିଶୁ ସାତ୍ତ୍ୱିକ ପ୍ରାଣ ଜାଗ୍ରତ । ଗ୍ରୀଷ୍ମ-ଋତୁରେ ଶିଶୁ ଶାନ୍ତ ଓ ସ୍ଥିର । ବର୍ଷାଋତୁରେ ସାଧବବୋହୂ କୋଳରେ ଶିଶୁ ଲୀଳା-ଚଞ୍ଚଳ । ମାତ୍ର ଶରତଋତୁରେ 'କୁମାର ପୂର୍ଣ୍ଣିମା' ଉତ୍ସବରେ ଶିଶୁ ପ୍ରାଣ ଆନନ୍ଦ-ଚଞ୍ଚଳ । ଏହି ଆନନ୍ଦ କି ସାତ୍ତ୍ୱିକ, କି ସ୍ୱର୍ଗୀୟ ଉପାଦାନରେ ବିଭୂଷିତ ! ରୁଚିର ଶରତକାଳ କାଶତଣ୍ଡୀ ଫୁଲ, ମାଳତୀ, ଶଙ୍ଖଶିଉଳି, ନେଶର; ଅଗସ୍ତିଦ୍ରୁମ, ଉଜ୍ଜ୍ୱଳ ନକ୍ଷତ୍ରମାଳା, ପ୍ରଦୋଷ ଜହ୍ନି ଫୁଲ—ଏହି ବାତାବରଣରେ କୁମାରୀ ଅନ୍ତର କି ପ୍ରେରଣାରେ ଉଦ୍‌ବୋଧିତ, ତାହା ବର୍ଣ୍ଣ୍ୟ ।

ରଜନୀରେ କୁମାରୀଏ ମହା ଆନନ୍ଦରେ
ମଣ୍ଡିଣ ସୁନୀଳ କେଶ ଶୁଭ୍ର କୁସୁମରେ;
ତାରା ବିମଣ୍ଡିତ ନୀଳ ଗଗନକୁ ଚାହିଁ
ହରଷ ମାନସେ ନାନାରଙ୍ଗେ ଗୀତ ଗାଇ ।

ହେମନ୍ତ ଆଉ ଶୀତଋତୁରେ ଶିଶୁମନ ବସନ୍ତ ଓ ଶିଶିର ଭାବ ଅନୁଗତ ନୁହେଁ ।

ଆଖୁ କ୍ଷେତ ଧାରେ ଯେବେ ଆଖୁଶାଳାରେ ବସି
ଗ୍ରାମକଥା ଗ୍ରାମବାସିଏ ଗଳ୍ପ କରନ୍ତି ବସି ।
ଆଖୁ ଗଛର ରସ ମଧୁର ପିଇ ବାଳକଗଣ
ବୁଲନ୍ତି ଚୌଦିଗେ ହରଷେ ପୂରିଅଛି ବଦନ ।
ଶୀତ ଅନ୍ତେ ପୁଣି ଆସିବ ମଧୁମୟ ବସନ୍ତ
ଧନ୍ୟ ଧନ୍ୟ ବିଶ୍ୱକାରଣ ତୋର ଦୟା ଅନନ୍ତ ।

ପ୍ରକୃତିର ଉପମା ଓ ବର୍ଣ୍ଣନା କି ଶିଶୁସୁଲଭ ଭାବାନୁକୂଳ ! ଶିଶୁର ହୃଦୟରେ ଛ ଗୋଟି ଋତୁ ଯେଉଁ ମଧୁର ବାଳଗୋପାଳ ମୂର୍ତ୍ତି ଅଙ୍କନ କରିଛନ୍ତି, ତାହା ହିଁ ମଧୁସୂଦନ ସୂକ୍ଷ୍ମ ଉପାୟରେ ଆମ୍ଭମାନଙ୍କ ସମ୍ମୁଖରେ ଅବତାରଣା କରିଅଛନ୍ତି । ମଧୁସୂଦନ ଏହି ଶିଶୁସୁଲଭ ଆନନ୍ଦ ଓ ପ୍ରୀତିମୟତାକୁ ମଧ୍ୟ ବୃଦ୍ଧ ବୟସରେ ରକ୍ଷାକରି ଯାଇଛନ୍ତି । ଶିଶୁ-ଜୀବନର ସ୍ଫୂର୍ତ୍ତି, ସରଳ ଅନୁଭୂତି-ଐଶ୍ୱର୍ଯ୍ୟ କବିର ଜରାଜୀର୍ଣ୍ଣ ହୃଦୟରେ ମଧ୍ୟ ଜାଗ୍ରତ । ତାଙ୍କର ରସପୂତ ପ୍ରାଣ ସର୍ବଦା ଭାବବିସ୍ମିତ ଓ ଶିଶୁପକ୍ଷ ସମର୍ଥନକାରୀ । ସଂସାର ଦୁଃଖଜଞ୍ଜାଳପୂର୍ଣ୍ଣ, ମାତ୍ର ଏହି ଦୁଃଖ ଯନ୍ତ୍ରଣାପୂର୍ଣ୍ଣ ଜଗତରେ ଯେ ନିଜକୁ ଶିଶୁତୁଲ୍ୟ ପ୍ରତ୍ୟେକରୁ ନିବୃତ୍ତ ରଖି ଚଳି ପାରିଥାଏ, ସେ ଏକା ଜୀବନରେ ସୁଖୀ । ଶିଶୁର କ୍ରନ୍ଦନ, ଶିଶୁର ଉଚ୍ଛୁଳା ହସ, ଶିଶୁର ପ୍ରାଣର ଆବେଗ ଓ ଲସ୍ୟମୟ ନିରବଚ୍ଛିନ୍ନତା, ଶିଶୁ-ଜୀବନର ବନ୍ଧନଶୂନ୍ୟତା ଚିତ୍ରିତ, ସାରଲ୍ୟ କବି ଲେଖନୀର ସାମଗ୍ରୀ । ମଧୁସୂଦନଙ୍କ ହୃଦୟ ଶତ ଦୁଃଖଦୁର୍ଦ୍ଦଶା ସତ୍ତ୍ୱେ ଏହି ସାରଲ୍ୟରେ ପୂର୍ଣ୍ଣଥିଲା । ତେଣୁ ମଧୁସୂଦନ ଶିଶୁପ୍ରାଣରେ ବିଶ୍ୱଦେବତାଙ୍କୁ ଜାଗ୍ରତ କରାଇ ଅଛନ୍ତି । 'ପରମେଶ୍ୱର' କବିତାରେ କବି କି ନିର୍ମଳ ମନରେ ଶିଶୁ ହୃଦୟକୁ, ଶିଶୁର ବିଶ୍ୱଭକ୍ତି ଭାବକୁ ପ୍ରତିଫଳିତ କରାଇଛନ୍ତି, ତାହା ଦେଖିବାର କଥା ।

ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା ଚରମ ଈଶ୍ବର ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପାଖେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର
ଏ କଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।

ଶିଶୁର ବିଶ୍ବ ସମ୍ପର୍କରେ କି ସରଳ ନିଷ୍କପଟ ଧାରଣା ! 'ସ୍ତବ' କବିତାରେ କି ଭକ୍ତିପୂର୍ଣ୍ଣ ଚିତ୍ତରେ ଉପାସନାରତ ଶିଶୁର ହୃଦୟ ବିସ୍ମୟରେ ପୂର୍ଣ୍ଣ ! ମାତ୍ର ଏହି ବିସ୍ମୟରେ ସତ୍ୟ ଲୁକ୍କାୟିତ ଅଛି । ଚରମ-ବ୍ରହ୍ମ ସ୍ରଷ୍ଟାଙ୍କ ଶିଶୁକୁ ପୂଜା କରିବାକୁ କବି ବାରମ୍ବାର ପ୍ରୋତ୍ସାହିତ କରିଛନ୍ତି । ଶିଶୁ ଆଖିରେ ପ୍ରଥମେ ପ୍ରତିଭାତ ହୁଏ ତାର ଚତୁଃପାର୍ଶ୍ବର ପୃଥିବୀ, ସ୍ୱର୍ଣ୍ଣବରଣ, ଚକ୍ରବାଳ ଉଷା ଓ ପ୍ରଦୋଷ । ରାକା-ରଜନୀ ଶିଶୁ-ପ୍ରାଣରେ କି ବିଶାଳତା ଓ ରହସ୍ୟ ଉତ୍ପାଦନ କରିଥାଏ !

କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର
ଧନ୍ୟ ମହାପ୍ରଭୁ ମହିମା ତୁମର ଅଟେ ଅନନ୍ତ ଅପାର ।
ସୂର୍ଯ୍ୟ ଚନ୍ଦ୍ର ତାରା ତୁମର ଆଜ୍ଞାରେ ବିତରନ୍ତି ଜ୍ୟୋତିରାଶି
ତୁମର କରୁଣା ପ୍ରତି ପ୍ରଭାତରେ ହସଇ ଆନନ୍ଦେ ଭାସି ।
ପିତାମାତା ବନ୍ଧୁ ଭାଇ ଭଗିନୀର ହୃଦୟେ ଦେଇଛ ପ୍ରୀତି
ତେଣୁ ମୁଁ ସଂସାରେ ରହିଛି ଆନନ୍ଦେ ସୁଖ ଭୁଞ୍ଜି ନିତି ନିତି ।
ଦିଅ ଭକ୍ତି ପ୍ରଭୁ ହୃଦୟେ ମୋହର ବିଜ ନିତ୍ୟ ତହିଁରେ
ସତ୍ୟପଥେ ରହି ତୁମର ଆଶ୍ରାରେ ଯାଉ ଆୟୁ-ମହୀରେ ।

ସାଧୁ ମଧୁସୂଦନଙ୍କର ସତ୍ୟବିଶ୍ବାସ, ଚରିତ୍ର ଓ ଧର୍ମଧାରଣା ବିଶ୍ବ ଶିଶୁପ୍ରାଣ ଉପରେ ବହୁ ପ୍ରଭାବ ପକାଇ ଯାଇଅଛି । ମଧୁସୂଦନ-ଙ୍କର କାବ୍ୟ-କବିତା ଆଗ୍ରହ ବ୍ୟଞ୍ଜିତ ସତ୍ୟ ଓ ଶୁଦ୍ଧ ଚରିତ୍ର ପ୍ରତି ବିଶେଷ ଆସ୍ଥା ଥିଲା । ଉତ୍କଳବାସୀ ଓ ଉତ୍କଳର ଶିଶୁସମାଜରେ କବିତା

ରଚନା ଛଳରେ ମଧୁସୂଦନ ଯେଉଁ ମାତ-ବାଳବନ୍ଦନ କରିଛନ୍ତି, ତାହା ହିଁ ଶୁଦ୍ଧପୂତ, ସରଳ ଆଦର୍ଶୀଭୂତ, ଜୀବନର ବାଲ୍ୟଅଧ୍ୟାୟ । ଶିଶୁ ହୃଦୟରେ ସତ୍ୟ-ବାଳବନ୍ଦନ କରିବାପାଇଁ ସ୍ୱର୍ଗବାସୀ ଦେବତାମାନେ ମଧୁସୂଦନଙ୍କୁ ଯେପରି ମର୍ତ୍ତ୍ୟଧାମକୁ ପ୍ରେରଣ କରିଥିଲେ ଏବଂ ଶିଶୁମାନଙ୍କୁ ଏହି ଶୁଦ୍ଧ ଆଦର୍ଶରେ ଅନୁପ୍ରାଣିତ କରିବାକୁ ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମେ ମଧୁସୂଦନ ହିଁ ଲେଖନୀ ଧାରଣ କରିଥିଲେ । ମଧୁସୂଦନ ଓଡ଼ିଆ ସାହିତ୍ୟରେ ଏହି ପରମ୍ପରା ପିନ୍ଧାଇଗଲେ ବୋଲି ମାନିବାକୁ ହେବ ।

ଶିଶୁର ସ୍ୱପ୍ନ ହେଉଛି ତାର ପ୍ରାଣଦାୟୀ ଜନନୀ । ତେଣୁ ଶିଶୁ-ପ୍ରାଣରେ ଜନନୀର ମୂର୍ତ୍ତି ଅଙ୍କନକରି ମଧୁସୂଦନ ଶିଶୁ ଓ ଜନନୀ ସ୍ପର୍ଶରେ ବାନ୍ଧିଲେ । ଏହି ଜନନୀମୂର୍ତ୍ତି ଶିଶୁ ନିକଟରେ ସ୍ୱର୍ଗର ଦେବୀ । ଜନ୍ମଦାୟୀ ଜନନୀର ବନ୍ଧନ ଶିଶୁ କଣ ଭୁଲିପାରେ ? ତେଣୁ କବି ଲେଖିଛନ୍ତି—

"ପୁଡଅଛୁ ମନେ ମୋର ଶୈଶବର କଥା ହେ
ଶୁଣ ଶିଶୁଗଣ
ଆହା କେତେ ସୁଖ ଦୁଃଖ କେତେ ପ୍ରିୟଜନ ମୁଖ
କରଇ ସ୍ମରଣ ହେ ।

× × ×

'ଦିବାନିଶି ଆକାଶରେ ଜଳେ ସ୍ଥଳେ ଚରାଚରରେ
ମୋହଇ ଜନନୀ ମୂର୍ତ୍ତି ଧରି ମୋତେ ବାନ୍ଧେ ହେ ।

ତା ପରେ ଶିଶୁମନରେ ଆଦର୍ଶ ପରିବାର ଚିତ୍ର ମୁଦ୍ରାଙ୍କିତ କରି କବି ଲେଖିଲେ—

ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

ମୈତ୍ରୀ ହିଁ ବିଶ୍ୱବନ୍ଧନର ଶୃଙ୍ଖଳା । ଶିଶୁ ସମ୍ମୁଖରେ ପିତାମାତା ସ୍ୱର୍ଗର ଦେବତାଠାରୁ ବଡ଼ । ସେହି ପିତାମାତାଙ୍କ ଉଦ୍ଦେଶ୍ୟରେ ଶିଶୁ ପ୍ରାଣୋତ୍ସର୍ଗ କରିବା ବିଶ୍ୱନିୟମ । ପିତାମାତାଙ୍କ ସେବା ପ୍ରତ୍ୟେକ ବ୍ୟକ୍ତିର ଧର୍ମ ।

ପିତାମାତା ପର ଆଉ କେ ଅଛି ସଂସାରେ
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କର ସେବାରେ ।
ତାଙ୍କ ସ୍ନେହ ଉପକାର ଅତୁଳ୍ୟ ଜଗତେ
ଭକ୍ତିଭରେ ଶିଶୁଗଣ ସୁମର ସତତେ ।

ଏତକ ଲେଖି ମଧୁସୂଦନ ସନ୍ତୁଷ୍ଟ ହୋଇ ନାହାନ୍ତି । ସେ ପୁଣି ମାତୃଶିକ୍ଷା ନାମରେ ଶିଶୁର ଜୀବନବିକାଶ ଅନୁକୂଳ ଉପଦେଶବାଣୀ ଶୁଣାଇଛନ୍ତି ।

ବିଦ୍ୟା ଅଟଇ ମହାଧନ
ବାଳକେ କର ଉପାର୍ଜ୍ଜନ ।

× × ×

ଭାଷିଣ ସତ୍ୟ ପ୍ରିୟବାଣୀ
ତୋଷିବ ନିତ୍ୟ ସର୍ବପ୍ରାଣୀ ।

× × ×

ବାଳକେ ମୋର ବୋଲ କର
ସତ୍ୟ ପାଳିବ ନିରନ୍ତର ।

ସତ୍ୟପାଇଁ ଶିଶୁପ୍ରାଣରେ ଆଗ୍ରହ, ତୃପ୍ତି କବିର ଲକ୍ଷ୍ୟ । ଅବୋଧ ବାଳକ ସୃଷ୍ଟିରେ ଅସହାୟ । ଜୀବନର ପ୍ରତି ପଦରେ ସେ ଐଶୀଶକ୍ତିର ଆଶୀର୍ବାଦ ପ୍ରାର୍ଥନା କରେ ।

ହେ ଆନନ୍ଦମୟ ! କୋଟି ଭୁବନପାଳକ
ଅଧମ ଅକ୍ଷମ ମୁହିଁ ଅବୋଧ ବାଳକ
ଜ୍ଞାନଦାତା ଭଗବାନ,
ଦିଅ ମୋତେ ଶୁଦ୍ଧବୁଦ୍ଧି, ଦିଅ ଦିବ୍ୟଜ୍ଞାନ ।

ଏହି ଦିବ୍ୟଜ୍ଞାନ କଣ, ତାହାର ସ୍ୱରୂପ କିପରି ? ମାତ୍ର ସଙ୍ଗୀତର ମାଧୁର୍ଯ୍ୟରେ କବି ଶିଶୁପ୍ରାଣକୁ ପ୍ଲାବିତ କରି ପ୍ରାର୍ଥନାମୁଖୀ କରାଉ ଅଛନ୍ତି । ମନୁଷ୍ୟର ସମ୍ବଳ ନାହିଁ, ଶକ୍ତି ନାହିଁ । ଶିଶୁ ଆହୁରି ଅସହାୟ, ତେଣୁ ଶିଶୁର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି ହେଲା—

"ପ୍ରଭୋ ପରମ ଶରଣ—
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।"

ଏହି ସମର୍ପଣ ହିଁ ପ୍ରାଣୀର ମଙ୍ଗଳପାଇଁ । ଏହି ସମର୍ପଣରେ ହିଁ ଶିଶୁ ଦେବଶିଶୁ ହୁଏ । "ଶୋଭା" କବିତାରେ ସେପରି ଶିଶୁଙ୍କୁ କବି ଆହ୍ୱାନ କରୁଛନ୍ତି—

ବାଳକ ବାଳିକା ଆସ ସରବେ
ଭୁବନ ନଳିନୀ ଶୋଭା ଦେଖିବେ ।
ଦରଶନ କରି ପ୍ରେମ ନୟନେ
ସଫଳ କର ହେ ନିଜ ଜୀବନେ ।
ସେ ମହାସତ୍ତ୍ୱରେ ବସି ଆନନ୍ଦେ
ଗାଅ ହେ ବନ୍ଦନା ମଧୁର ଛନ୍ଦେ ।

ମଧୁସୂଦନଙ୍କର ଶିଶୁସଂସାରର ପ୍ରକୃତରୂପ ଓ ବିସ୍ତାର କଣ ? ଏହି ଶିଶୁସଂସାରରେ ମାନବ ସନ୍ତାନ ଅତି କ୍ଷୁଦ୍ର । ଚପଳମତି ଓ ବର୍ଦ୍ଧିଷ୍ଣୁ ପ୍ରାଣ । ସେହି ଶିଶୁ ଏହି ଅବସ୍ଥାରେ କେବଳ ପିତାମାତାଙ୍କର ବାଧ୍ୟ ସନ୍ତାନ, ପରିଶ୍ରମୀ, ବିଦ୍ୟାବନ୍ତ, ସହଜ ବୁଦ୍ଧି ଓ ସରଳ ପ୍ରାଣ

ବିଶିଷ୍ଟ । ତେଣୁ 'ଧ୍ୱନି' କବିତାରେ ଏହି ଶିଶୁପ୍ରସାର ସ୍ପଷ୍ଟ ବିବୃତ କରି ଦିଆଯାଇଛି ।

ଶିଶୁର ଦିଶୁଛି ଅମୃତ ବଚନ
ସ୍ମବରର ଷୀଣ ଭାଷ
ତରୁଣଜନର ଉତ୍ସାହ ପ୍ରଫୁଲ୍ଲ
ବଦନେ ଉଦ୍ଭାସ ହାସ ।
ଗୁରୁଜନଙ୍କର ସ୍ନେହାଦରମୟ
ପୁଣ୍ୟ ଉପଦେଶ ବାଣୀ
ଶିଷ୍ୟଜନଙ୍କର ଭକ୍ତି ପୂର୍ଣ୍ଣ କଥା
ଗୁରୁଙ୍କ ଗୌରବ ଜାଣି । (ଧ୍ୱନି)

ଏ ସୃଷ୍ଟି ଅମୃତମୟ । ବିଧିବିଧାନ ପୁଣ୍ୟମୟ । ସେ ସବୁର ଜୟଗାନ କରିବାପାଇଁ କବି ପ୍ରବର୍ତ୍ତାଇ ଅଛନ୍ତି । ମଧୁସୂଦନଙ୍କର କାବ୍ୟ-କବିତାରେ ପରିକଳ୍ପିତ ଶିଶୁ ପ୍ରକୃତରେ ଧର୍ମ, ସତ୍ୟ, ସୌନ୍ଦର୍ଯ୍ୟ ଓ ସରଳତାର ପ୍ରତିମୂର୍ତ୍ତି । ପୁଣ୍ୟବ୍ରତ ଶିକ୍ଷାପାଇଁ ତାଙ୍କର ଆଦର୍ଶ ଶିଶୁ ବ୍ୟସ୍ତ ।

ପ୍ରତ୍ୟକ୍ଷ ଦେବତା ବୋଲି ମଣିବ ହେ ଜନନୀ ଜନକେ
କରିବ ଦୁହିଁଙ୍କ ସେବା ପ୍ରାଣପଣେ ବାଳିକା ବାଳକେ ।
ଶୁଣାଇବ ମୃଦୁବାଣୀ ଆଚରିବ ପ୍ରିୟ ଅନୁକ୍ଷଣ
ସୁପୁତ୍ର ସୁକନ୍ୟା ହୋଇ ସୁ-ପବିତ୍ର କର ହେ ଜୀବନ ।
ଅଟନ୍ତି ପରମଗୁରୁ ପିତାମାତା ଦେବ ଏହି ଦୀକ୍ଷା
ଆକାଶହୁଁ ବଡ଼ ପିତା ମାତା ବଡ଼ ପୃଥିବୀ ଅପେକ୍ଷା ।

ତେଣୁ ଏହି ଶିଶୁଗଣ ସୁପୁତ୍ର ଏବଂ ସୁକନ୍ୟା । ସେମାନେ ମୈତ୍ରୀ-ଶ୍ରଦ୍ଧା ଭାବରେ ଉଦ୍‌ବୋଧିତ; କର୍ତ୍ତବ୍ୟ ଓ ଧର୍ମ ନିବୃତ୍ତିରେ ସେମାନଙ୍କର

ପ୍ରାଣପ୍ରତି ମୁହୂର୍ତ୍ତରେ ଝଙ୍କୃତ । ଏଣେ କବି ମଧୁସୂଦନ ଏକ ସ୍ଥାନରେ ଘୋଷଣା କରନ୍ତନ୍ତି—

ଅର୍ଦ୍ଧମାତ୍ର ଥାଏ ସେ ଧର୍ମପତ୍ନୀ ନ ଲଭିବା ଯାଏ
ବାଳକ ବାଳିକା ଶୂନ୍ୟ ନିକେତନ ଶ୍ମଶାନ ପରାଏ ।
ଗୃହସ୍ଥର ଏହି ଶିଶୁମାନଙ୍କ ପ୍ରତି ଗୁରୁ କର୍ତ୍ତବ୍ୟ ଅଛି ।
ବିଦ୍ୟା ଶିଖାଇବେ ପୁତ୍ର କନ୍ୟା ଉଭୟେ ଯତନେ
ବିତର ଧର୍ମର ଜ୍ଞାନ ଚଳାଇବେ ଧର୍ମର ଶାସନେ ।

'ଦୃଷ୍ଟାନ୍ତମାଳା' ଓ 'ମଣିମାଳାର' ପ୍ରତ୍ୟେକ ପାଦରେ ଶିଶୁପ୍ରତି କଣ୍ଠିତ ଉପଦେଶ ସଞ୍ଚିତ ହୋଇଅଛି । ଶିଶୁର ବାଲ୍ୟକାଳ, ଧର୍ମଆହରଣ ନିମିତ୍ତରେ ସମନ୍ୱିତ ହେଉ, କବି ଏହା ଇଚ୍ଛା କରିଛନ୍ତି ।

ବାଲ୍ୟକାଳୁ ଧର୍ମ-ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ,
କେ ଜାଣେ କାହାର ଆଜି ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।

ଶେଷରେ ମଧୁବାବୁଙ୍କର ଶିଶୁ ସମ୍ପର୍କରେ ଯେଉଁ ଅତ୍ୟୁଚ୍ଚ ଆଦର୍ଶ, ତାହା ତାଙ୍କର "ନବଜାତ ଶିଶୁ ଦର୍ଶନରେ" କବିତାରେ ପର୍ଯ୍ୟବେସିତ । ସେହି କବିତାଟିରେ କବି ପ୍ରମାଣ କରିଛନ୍ତି, ଶିଶୁର ସୁଧାକଳ୍ପ ଦେବତ୍ୱ ।

ନୁହଇ କି ଦେବଭୂମି ଏହି ନିକେତନ
ନୁହେ କିଏ ଦେବଶିଶୁ ଶୁଭ୍ର ସ୍ୱର୍ଗର
ବାଞ୍ଛାକଳ୍ପତରୁମୟ ନନ୍ଦନ କାନନ
ଧରାର କି ପାରିଜାତ ଏଥୁ ଶୁଭ୍ରତର ?

× × ×

କି ଅମୃତ ଚୁମ୍ବନ ସେ କି ପୁଣ୍ୟ ପରଶ
କି ପବିତ୍ର ଆଶୀର୍ବ୍ବାଦ କହ ଆରେ ଶିଶୁ
ଲଭି ଯାହା ତୁହି ଏଡ଼େ ମନୋହର ବସ୍ତୁ
ବଚନ ଅତୀତ ତାହା କି ଅମୃତ ରସ
ପୃଥିବୀର ନରନାରୀ ପୁଣ୍ୟ ଆଦରଶ
ଶିକ୍ଷାକର ଶିଶୁ ରୂପ ସୁଖଦ ଆଶିଷୁଁ ।

ମଧୁସୂଦନଙ୍କ ଦୃଷ୍ଟିରେ ଓ ତାଙ୍କର ବିବିଧ କବିତାରେ ଏହି ଶିଶୁ ପୁତ୍ର, କନ୍ୟା, ଭାଇଭଉଣୀ ରୂପରେ ଚିତ୍ରିତ । ସେମାନଙ୍କ ସମ୍ମୁଖରେ ଲେଖକ ବିଶ୍ୱର ଆଦର୍ଶ ଉପସ୍ଥାପନେ କରୁଛନ୍ତି । ସେମାନଙ୍କର ପ୍ରାଣରେ ଦେବ-ସୌନ୍ଦର୍ଯ୍ୟ କବି ନିଜେ ଭୋଗକରି ଅନ୍ୟମାନଙ୍କୁ ତାହା ଦେଖାଇ ଦେଉଛନ୍ତି । ଓଡ଼ିଆ ସାହିତ୍ୟରେ ଯଥାର୍ଥରେ ମଧୁସୂଦନ "ଶିଶୁସାହିତ୍ୟର" ବିଶେଷ ଆଲୋଚନା କରିଥିଲେ । କେବଳ ମାତ୍ର ଉପଦେଶ ବ୍ୟାଖ୍ୟାନ ତାଙ୍କର ଲକ୍ଷ୍ୟ ନ ଥିଲା; ବରଂ ଶିଶୁର ଗୃହପାଖରେ ଯେଉଁ ଅନାସ୍ୱାନ୍ତ ସୌନ୍ଦର୍ଯ୍ୟ ପ୍ରକଟିତ, ତାହାର ରୂପ ଛନ୍ଦୋବୃତ୍ତି ମଧ୍ୟ ମଧୁସୂଦନ ଦୃଷ୍ଟି ଦେଉଥିଲେ । ମଧୁସୂଦନଙ୍କ ଶିଶୁସାହିତ୍ୟ ପ୍ରଭାବ ଆଧୁନିକ ଶିଶୁସାହିତ୍ୟ ଲେଖକମାନଙ୍କର ଆଦର୍ଶ ।

ଶିଶୁ ଯେ ମାନବ ଜୀବନର ବିକାଶ ସଂକେତ, ଶିଶୁ ଯେ ବିଶ୍ୱ-ପ୍ରାଣର ଧାରା, ସତ୍ୟଉପାସକ, କବି ତାହା ହିଁ ପ୍ରମାଣ କରିଛନ୍ତି । ଆଉ ମଧୁସୂଦନ ଓଡ଼ିଆ ସାହିତ୍ୟରେ ଏହି ଗୁରୁଦାୟିତ୍ୱ ଓ ଶିଶୁ ପ୍ରୀତିର ପଥପ୍ରଦର୍ଶକ । ଆଉ ତାଙ୍କର ସମଗ୍ର ସାହିତ୍ୟ ଭଣ୍ଡାରରେ ଶିଶୁସାହିତ୍ୟ ଗୋଟିଏ ଅଂଶ ମାତ୍ର । ଆଜି ତାଙ୍କର ଶ୍ରାଦ୍ଧବାସରେ ଶିଶୁତୁଲ୍ୟ ମୁଁ ପ୍ରଣତି ଜଣାଉଛୁ ।

—-୫୫୫୫—

# ମେହେରଙ୍କ କାବ୍ୟରେ ପ୍ରେମ

ବିବିଧ ଅନୁଭୂତି, ଅଭିଜ୍ଞତା, ତଥା କର୍ମପ୍ରବୃତ୍ତିର ପରସ୍ପର ବିରୋଧୀ ଆଭିମୁଖ୍ୟ ମଧ୍ୟରେ ସମାଜସ୍ଥ ନରନାରୀଙ୍କର ସ୍ୱାଭିଜ୍ଞାନ ଓ ସ୍ୱରୂପ ଚିହ୍ନିତ ହୋଇଥାଏ । ସ୍ୱାମୀ-ସ୍ତ୍ରୀ, ପିତାମାତା, ଭ୍ରାତା-ଭଗିନୀ, ବନ୍ଧୁବାନ୍ଧବ—ଏମାନଙ୍କର ପରସ୍ପରର ସମ୍ପର୍କ ହିଁ ଜୀବନର ଅଭିବ୍ୟକ୍ତି ଏବଂ ଏହି ଅଭିବ୍ୟକ୍ତି ହିଁ କାବ୍ୟକବିତାର ପୁଷ୍ପିତ ପ୍ରାଣ । ସମାଜରେ ମନୁଷ୍ୟର ସମ୍ପର୍କ ବଡ଼ ଜଟିଳ । ପୁନଶ୍ଚ ଏହି ଜଟିଳ ସମ୍ପର୍କ ସେମାନଙ୍କର ପରସ୍ପର ମଧ୍ୟରେ ପ୍ରେମ-ପ୍ରଣୟ-ବାତ୍ସଲ୍ୟ-ଭକ୍ତି ତଥା ମୈତ୍ରୀ ଉପରେ ହିଁ ଆଧାରିତ । ନରନାରୀ ମଧ୍ୟରେ ସର୍ବାପେକ୍ଷା ସ୍ନିଗ୍ଧ ଏବଂ ମଧୁର ସମ୍ପର୍କ ହେଉଛି ପ୍ରେମଜନିତ ସମ୍ପର୍କ । ଯୁବକଯୁବତୀଙ୍କ ମଧ୍ୟରେ ଯେଉଁ ସୂକ୍ଷ୍ମ ଏବଂ ଗଭୀରତମ ସମ୍ପର୍କ ତଥା ଯଥାର୍ଥତଃ ପ୍ରେମ-ନିୟନ୍ତ୍ରିତ । ପ୍ରେମ ହିଁ ସେମାନଙ୍କ ଜୀବନର ନିୟାମକ, ସେମାନଙ୍କ ଜୀବନର କର୍ମପ୍ରେରଣାର ଆଦ୍ୟ ଉତ୍ସ ଓ ଶେଷ ପର୍ଯ୍ୟନ୍ତ ଜୀବନର ବିରାଟ ଦର୍ଶନ । ପ୍ରେମ ମାନବ ଜୀବନର ଏକମାତ୍ର ଉପାଦାନ । ତେଣୁ ପୃଥିବୀର ପ୍ରତ୍ୟେକ ପୁରାଣ, ଧର୍ମଶାସ୍ତ୍ର, କାବ୍ୟକବିତା ଯେତେବେଳେ ମାନବ ଜୀବନ ଉପରେ ଆଧାରିତ, ସେତେବେଳେ ସେ ସବୁ ମଧ୍ୟରେ ପ୍ରେମ ସ୍ଥାନ ପାଇବା ସ୍ୱାଭାବିକ ଏବଂ ଅବଶ୍ୟମ୍ଭାବୀ । ନରନାରୀଙ୍କ ମଧ୍ୟରେ ପ୍ରେମ ହିଁ ସେମାନଙ୍କ ସମ୍ପର୍କର ଆଦ୍ୟ ଭୂମିକା ଏବଂ ଏହି ପ୍ରେମ ହିଁ କବିର କାବ୍ୟ-କବିତା ପକ୍ଷରେ ଅପରିହାର୍ଯ୍ୟ । ମହାକାବ୍ୟର ସ୍ୱରୂପ ମାନବ ଜୀବନର

ବିରାଟ ଅସ୍ତିତ୍ୱକୁ ସ୍ୱୀକାର କରିବାରେ ଏବଂ ମାନବ ଜୀବନର ବିରାଟ ଅସ୍ତିତ୍ୱ ପ୍ରେମର ଜୀବନ୍ତ ନିଷ୍ଠାରେ ହିଁ ରଚିତ। ଜୀବନର ଅନୁଭୂତି ଅଭିଜ୍ଞତା ବ୍ୟତୀତ କାବ୍ୟ ନାହିଁ ଏବଂ ପ୍ରେମର ସ୍ପର୍ଶ ବ୍ୟତୀତ ଜୀବନର ଅନୁଭୂତି କେଉଁଠାରେ ହେଲେ ପୂର୍ଣ୍ଣାଙ୍ଗ ହୋଇନାହିଁ। ଇଂରାଜୀରେ ଗୋଟିଏ କଥା ଅଛି "Love rules the Universe" ପ୍ରେମ କହ, ପ୍ରୀତି କହ, ପ୍ରଣୟ କହ—ଏହା ଜୀବନର ମାଧୁର୍ଯ୍ୟରସାଶ୍ରିତ ଏବଂ ସମ୍ବନ୍ଧରେ ଯେତିକ ଜୀବନର ପ୍ରଖ୍ୟାପକ, ସେହିପରି ଜୀବଧର୍ମର ଚିହ୍ନ। ଏହି ପ୍ରେମ-ଲୀଳା ହିଁ ବିଶ୍ୱଧର୍ମର ସର୍ବସ୍ୱ। ତାହାର ମାଧ୍ୟମରେ ବିଶ୍ୱର ପ୍ରତ୍ୟେକ ସତ୍ତା ଯେପରି ଜୀବନ୍ତ, ରସାନ୍ୱିତ ହେବାକୁ ଚାହେଁ। ସେଥିପାଇଁ ସୃଷ୍ଟିର ଆବହମାନ କାଳରୁ ମନୁଷ୍ୟର ସମ୍ପର୍କ ପ୍ରେମ ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ସେହି ବିଚାରରେ ମନୁଷ୍ୟର ସମସ୍ତ ଅତୀତ କାବ୍ୟ-କବିତା ପ୍ରେମ ବ୍ୟାଖ୍ୟାନ ବ୍ୟତୀତ ଅନ୍ୟ କିଛି ନୁହେଁ। ପ୍ରେମାନୁଭୂତି, ପ୍ରେମ ଆଉ ଅଭିବ୍ୟକ୍ତି ହିଁ କାବ୍ୟମାନସୀର ପ୍ରାଣଧର୍ମ। ଏହି ପ୍ରେମ ଯାହା କି ସାଧାରଣ ବିଚାରରେ ଶୃଙ୍ଗାରଧର୍ମୀ, ତାହାର ଆଭିମୁଖ୍ୟ ମଧ୍ୟ ବିସ୍ତୃତ। ଏଠାରେ ପ୍ରେମର ଆଦର୍ଶ ମଧ୍ୟ ବିଚାର୍ଯ୍ୟ। ବିଶ୍ୱଧର୍ମ ରକ୍ଷା କରିବାରେ ଏହି ପ୍ରେମ ହିଁ ସହାୟକ ଉପାଦାନ। ତେଣୁ ପ୍ରେମର ଆଦର୍ଶ ବିଶ୍ୱ ମାନବିକତା ଚେତନ ଜୀବନତୃଷ୍ଣା, ଜୀବନର ଯଥାର୍ଥ ବେଗ, ବିନିଯୋଗ ଓ ସେହି ପ୍ରକ୍ରିୟାରେ ଜୀବର ପରମ ମୁକ୍ତି। ଏହି ପ୍ରେମ ଜୀବନର ଆବିଷ୍କାର କରେ ଏବଂ ଜୀବନର ସମସ୍ତ ସମ୍ଭାବନା ଜାହିର କରେ। ଯାହା ଆଦର୍ଶ ପ୍ରେମ ତାହା ସ୍ୱର୍ଗୀୟ, ତାହା ଶାଶ୍ୱତ, ତାହା ଦେବତା-ମାନଙ୍କର ମଧ୍ୟ କାମ୍ୟ। ମନୁଷ୍ୟର ସମଗ୍ର ସାମାଜିକ ସଂସ୍ଥା ଏହି ପ୍ରେମ ଦ୍ୱାରା ହିଁ ନିୟନ୍ତ୍ରିତ। ପ୍ରେମ ଯେବେ ନ ଥାନ୍ତା, ତେବେ ସମଗ୍ର ମାନବ ସମାଜ ଏକ ଅର୍ଥହୀନ ବିଶୃଙ୍ଖଳ ସଂସ୍ଥାରେ ପରିଣତ ହୋଇଥାନ୍ତା। ନାରୀ ଏବଂ ପୁରୁଷର ପ୍ରେମଜନିତ ସମ୍ପର୍କରେ ପୌରୁଷର ଦାୟିତ୍ୱ ନିହିତ।

ଏହି ଦାୟିତ୍ୱ ହିଁ ବସ୍ତୁବୋଧର ପ୍ରଥମ ଚେତନା । ସେଥିପାଇଁ ପୂର୍ବା-ଚାର୍ଯ୍ୟମାନଙ୍କ ମତରେ 'ପ୍ରେମ'ର ସଙ୍ଗ, ପରସର ସ୍ୱର୍ଗୀୟ । ରାମାୟଣରେ ରାମଚନ୍ଦ୍ର-ସୀତା, କାଳିଦାସଙ୍କର ଶକୁନ୍ତଳା, ମାଳବିକା କିମ୍ବା ସେକସ୍‌ପିଅରଙ୍କର ଡେସ୍‌ଡେମୋନା ପ୍ରଭୃତି ପ୍ରେମରାଜ୍ୟରେ ଅନୁ-ସନ୍ଧେୟ ଚରିତ ।

ବିଂଶ ଶତାବ୍ଦୀର ପ୍ରଥମ ପାଦ ଓଡ଼ିଆ ସାହିତ୍ୟ ଇତିହାସରେ ବୈପ୍ଳବିକ ଚିନ୍ତାଧାରା ଦ୍ୱାରା ଚିହ୍ନିତ । ସେହି ବୈପ୍ଳବିକ ଚିନ୍ତାଧାରା ଯଥାର୍ଥ ଭାବରେ ଯେଉଁମାନେ ଜାହିର କରିଥିଲେ, ସେମାନଙ୍କ ମଧ୍ୟରେ ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମର ସୃଜନଧର୍ମୀ ପ୍ରତିଭାଶାଳୀ କବି ଗଙ୍ଗାଧର ମେହେର ହେଉଛନ୍ତି ଅଗ୍ରଗଣ୍ୟ । ସମ୍ବଲପୁର ଜିଲ୍ଲାର କ୍ଷୁଦ୍ର ବରପାଲି ଗ୍ରାମ, ସେଠାରେ ଏକ ସାଧାରଣ ତନ୍ତୀ ପରିବାର । ୧୮୬୨ ମସିହା ଶ୍ରାବଣ ପୂର୍ଣ୍ଣିମା ତିଥିରେ ଗଙ୍ଗାଧରଙ୍କର ଆବିର୍ଭାବ । ପରମ୍ପରା, କୌଳିନ୍ୟ, ଶିକ୍ଷା ଦୃଷ୍ଟିରେ ଗଙ୍ଗାଧରଙ୍କର ଜୀବନ ଏକ ଆଦର୍ଶପୂର୍ଣ୍ଣ ପରିବେଷ୍ଟନୀରେ ଆବାଲ୍ୟରୁ ଅଦୃଶ୍ୟ ଭାବରେ ନିୟନ୍ତ୍ରିତ ହୋଇଥିଲା । ତାଙ୍କ ପିତାମାତାଙ୍କର ହିନ୍ଦୁ ଆଦର୍ଶଗତ ଜୀବନ-ଚଳଣୀ ଗଙ୍ଗାଧରଙ୍କୁ ଅବଶ୍ୟ ପ୍ରଭାବିତ କରିଥିଲା । ଗ୍ରାମ୍ୟପାଠଶାଳାର ପରିବେଶ, ପ୍ରାଚୀନ ସଂସ୍କୃତିର ପ୍ଳାବନ, ଧର୍ମନୀତି, ରୁଚିଗତ ଜୀବନର ନିର୍ମଳ ମହତ୍ତ୍ୱ, ଗଙ୍ଗାଧରଙ୍କ ପରବର୍ତ୍ତୀ କବି-ଜୀବନର ଦିଗଦର୍ଶନ ରୂପେ ଅଦ୍ଭୁତ ପ୍ରଭାବ ପକାଇଥିଲା । କବିର କବିତ୍ୱ ତାର ବ୍ୟକ୍ତିଗତ ଜୀବନ ଦ୍ୱାରା ପ୍ରଭାବିତ । ତାର ବ୍ୟକ୍ତିତ୍ୱ-ଜ୍ୟୋତିରେ କାବ୍ୟଶ୍ରୀ ବିରବିନ୍ ଆଲୋକିତ । କବିର ବ୍ୟକ୍ତିଗତ ଅନୁଭୂତି, ଜୀବନ-ଜିଜ୍ଞାସା, ଜୀବନାଦର୍ଶ ହିଁ ତାର କବିତାର ମୂଳ ପ୍ରେରଣା । ଏହି ଦୃଷ୍ଟିରେ ବିଚାର କଲେ ଗଙ୍ଗାଧରଙ୍କ ବ୍ୟକ୍ତିଗତ ଜୀବନ ଅତୀବ ଆଦର୍ଶପୂର୍ଣ୍ଣ, ତ୍ୟାଗପୂତ, ସାଧନା ଉଜ୍ଜ୍ୱଳ । ତେଣୁ ଗଙ୍ଗା-ଧରଙ୍କର ବ୍ୟକ୍ତିଗତ ଜୀବନର ଏହି ଆଦର୍ଶ ପବିତ୍ରତା, ତ୍ୟାଗ, ମହତ୍ତ୍ୱ

ଏବଂ ଧର୍ମମତିଜ୍ଞାନ ତାଙ୍କ କାବ୍ୟକବିତାରେ ଅବିମିଶ୍ର ଭାବରେ ପ୍ରତିଫଳିତ ।

କବି ଗଙ୍ଗାଧରଙ୍କ କାବ୍ୟରେ ପ୍ରେମ ଓ ଜୀବନର ଯଥାର୍ଥ ଚିତ୍ରଣ ବିଚାର କରିବାକୁ ଗଲେ ତାଙ୍କ କବିତ୍ୱ ସ୍ଫୁର୍ତ୍ତିର ଏହି ପୃଷ୍ଠଭୂମି ପ୍ରତି ଅବହିତ ହେବା ଦରକାର । ରାଧାନାଥ, ମଧୁସୂଦନ ଏବଂ ଫକୀର-ମୋହନଙ୍କ ସାହିତ୍ୟ ସାଧନାର ପ୍ରତିଚେତି ସମୟରେ ହିଁ ଗଙ୍ଗାଧରଙ୍କ କବିତ୍ୱର ସୃଷ୍ଟି, ସାଧନା ଓ ବିକାଶ ଘଟିଛି । ମାତ୍ର ସେ ସେହିର ନିଜ ସୃଷ୍ଟିର ସ୍ୱାତନ୍ତ୍ର୍ୟରେ ବରାବର ପ୍ରତିଷ୍ଠିତ ଏବଂ ଗୌରବାନ୍ୱିତ ମଧ୍ୟ । ନୂତନ କାବ୍ୟଛନ୍ଦ, ମନୁଷ୍ୟ ଜୀବନର ଯଥାର୍ଥ ବିଶ୍ଳେଷଣ । ସରଳୀକୃତ ରଚନାଶୈଳୀ, ସର୍ବୋପରି ବ୍ୟକ୍ତିତ୍ୱ ପ୍ରଭାବିତ କାବ୍ୟ ଧାରା ହିଁ ଗଙ୍ଗାଧରଙ୍କ କାବ୍ୟସୃଷ୍ଟିର ଶ୍ରେଷ୍ଠ ଯୋଗ୍ୟତା । ତାଙ୍କ ଜୀବନର ରୁଚି, ନୀତି, ଧର୍ମଜ୍ଞାନ, ଆଦର୍ଶ ବିଚାର ତାଙ୍କର କାବ୍ୟ-କବିତାର ପ୍ରତିଲିପିକୁ ଅର୍ଥ ସଞ୍ଜୀବିତ କରିଥାଏ ।

ତେଣୁ ଗଙ୍ଗାଧରଙ୍କ କାବ୍ୟରେ ବର୍ଣ୍ଣିତ ନାୟକନାୟିକାଗଣ ପରମ୍ପରା, ଆଦର୍ଶ, ରୁଚି ତଥା ବିବେକଜ୍ଞାନରୁ ମୁକ୍ତ ନୁହଁନ୍ତି । ସେମାନେ ପ୍ରତ୍ୟେକେ ଏକ ଏକ ଅତୁଳ ସ୍ୱର୍ଗୀୟ ଆଦର୍ଶରେ ନିମଜ୍ଜିତ, ବରଂ ଓତଃପ୍ରୋତ ଭାବରେ ଜଡ଼ିତ । ମାନବ ସମାଜର ପ୍ରାଚୀନ ପରମ୍ପରା, ସଂସ୍କାର, ଜୀବନର ଆଦର୍ଶ ସମର୍ଥିତ ଚଳଣି ସେମାନଙ୍କୁ ପ୍ରଭାବିତ ତଥା ପ୍ରଣୋଦିତ କରିଅଛି । କିଏ ପୁଣ୍ୟଶ୍ଳୋକ ରାମାୟଣର ଗୌରବରେ ମଣ୍ଡିତ, କିଏ କବିତ୍ୱର ଦିବ୍ୟଜ୍ଞାନରେ କ୍ରିୟାଶୀଳ, କିଏ ପୌରାଣିକ ପୃଷ୍ଠଭୂମିରେ ଅଙ୍କିତ ସୁଚରିତା, ତ୍ୟାଗପୂତା, କଲ୍ୟାଣୀୟା; କିଏ କେଉଁ ରାଜଦରବାରର ବିଳାସବ୍ୟସନରେ ଲାଳିତାପାଳିତା, କିଏ ମହାକବି କାଳିଦାସ ଯୁଗର ଆଶ୍ରମବାସିନୀ ମୁନିକନ୍ୟା, କିଏ ମର୍ତ୍ତ୍ୟରେ

ସ୍ୱର୍ଗ ସ୍ୱପ୍ନ ଦେଖୁଛି ତ କିଏ ସ୍ୱର୍ଗଚ୍ୟୁତ ହୋଇ ମର୍ତ୍ତ୍ୟରେ ଅଶ୍ରୁ ବିସର୍ଜନ କରୁଛି । କି ପୁରୁଷ, କି ନାରୀ, କେଉଁଠାରେ ସେମାନଙ୍କର ସମ୍ପର୍କ ଜଟିଳ, କେଉଁଠାରେ ଆଦର୍ଶ ସ୍ଥାନୀୟ, କେଉଁଠାରେ ତାହା ଭୁଙ୍ଗ ଆଦର୍ଶ ଉପରେ ପ୍ରତିଷ୍ଠିତ, କେଉଁଠାରେ ତାହା ପ୍ରବୃତ୍ତି ଓ ପାପର ପ୍ରଭାବରେ ଅତି ଅସ୍ପଷ୍ଟ ଏବଂ ଦୁର୍ବୋଧ । ଆଲୋଚ୍ୟ ପ୍ରବନ୍ଧରେ ଗଙ୍ଗାଧରଙ୍କ କାବ୍ୟ-କବିତାରେ ପ୍ରେମର ସ୍ୱରୂପ ବିଶ୍ଳେଷଣ କରା-ଯାଉଛି । ଏହି ବିଶ୍ଳେଷଣ ପୂର୍ବରୁ ଗଙ୍ଗାଧରଙ୍କ ଲିଖିତ କାବ୍ୟଶିଳ୍ପର ଏକ ସଂକ୍ଷିପ୍ତ ପରିଚୟ ଦରକାର । ଜ୍ଞାନର ପରିମାଣ ଅନୁଭବ କରିବାର କ୍ଷମତା ଅନୁସାରେ ପ୍ରତ୍ୟେକ କାବ୍ୟ ଏବଂ କାବ୍ୟବର୍ଣ୍ଣିତ ଚରିତ୍ର ପରସ୍ପରଠାରୁ ଭିନ୍ନ । ଲୋକଚରିତ୍ର ଅଧ୍ୟୟନ ଗଙ୍ଗାଧରଙ୍କ କାବ୍ୟର ଅଭିଳାପ୍ସା ଏବଂ ସେହି ଲୋକଚରିତ୍ର ଅଧ୍ୟୟନ ବରାବର ପରମ୍ପରା ସମ୍ବଳିତ ପୌରାଣିକ ପୃଷ୍ଠଭୂମିରେ ହିଁ ସମ୍ଭବ ହୋଇଛି ।

ଗଙ୍ଗାଧରଙ୍କ କାବ୍ୟ-ମାନସ ପୁରାଣମୁଖୀ ଏବଂ ପରମ୍ପରାମୋଦୀ । ତାହା ଯେପରି ଦିବ୍ୟଜ୍ଞାନାଶ୍ରିତ, ସେହିପରି ମଧ୍ୟ ଆବେଗପୋଷକ । ରାଧାନାଥ ତ ବହୁ କାବ୍ୟ ରଚନା କରିଥିଲେ । ମଧୁସୂଦନ ଅଜସ୍ର ଗୀତି କବିତା ଲେଖିଗଲେ । ତେବେ ଗଙ୍ଗାଧରଙ୍କର ନୂତନତ୍ୱ କେଉଁଠି ? ରାଧାନାଥ ଜଣେ ରୋମାଣ୍ଟିକ୍ କାବ୍ୟସ୍ରଷ୍ଟା । ସେ ବରାବର ଆବେଗର ଆଧିକ୍ୟରେ ହିଲ୍ଲୋଳିତ । ସୌନ୍ଦର୍ଯ୍ୟ ପୂଜାରେ ହିଁ ତାଙ୍କର କଣ୍ଠରୁ ବିଳସିତ । ତାଙ୍କର ଦିବ୍ୟଦୃଷ୍ଟି ସୌନ୍ଦର୍ଯ୍ୟାଶ୍ରିତ । ମଧୁସୂଦନ ସେହିପରି ଏକ ସତ୍ୟ ସଂସ୍କୃତ କବି-ମାନସର ପରିଚୟ ଦେଇଛନ୍ତି । ମାତ୍ର ଗଙ୍ଗାଧରଙ୍କଠାରେ ଉଭୟ ସୌନ୍ଦର୍ଯ୍ୟ ଓ ସତ୍ୟର ପ୍ରଭାବ ପରିଦୃଷ୍ଟ ହୋଇଥିଲା । ପୁରାଣର ପ୍ରକୃଷ୍ଟତା, ମାନବ ସମାଜର ଚିରନ୍ତନତା, ଗଙ୍ଗାଧରଙ୍କ କାବ୍ୟ-ମାନସର ବଳିଷ୍ଠ ଆଭିମୁଖ୍ୟ । ତେଣୁ ଗଙ୍ଗାଧରଙ୍କ

କାବ୍ୟରେ ପ୍ରେମ ପ୍ରସଙ୍ଗ ବିଚାର କଲାବେଳେ କବିଙ୍କର ଏହି ଦିଗକୁ ଆଭିମୁଖ୍ୟ ସ୍ମରଣ କରିବା ଆବଶ୍ୟକ ।

ଗଙ୍ଗାଧରଙ୍କ କାବ୍ୟର ସଂଖ୍ୟା କମ୍ ନୁହେଁ । ତପସ୍ୱିନୀ, ପ୍ରଣୟ-ବଲ୍ଲରୀ, କୀଚକବଧ, ଇନ୍ଦୁମତୀ ପ୍ରଭୃତି ପୌରାଣିକ ପର୍ଯ୍ୟାୟ ଅନ୍ତର୍ଭୁକ୍ତ କାବ୍ୟ, ଉତ୍କଳ ଲକ୍ଷ୍ମୀ, କବିତା କଲ୍ଲୋଳ ପ୍ରଭୃତି ପ୍ରକୃତି ବର୍ଣ୍ଣନାଶ୍ରୟୀ କାବ୍ୟ, ଖଣ୍ଡକବିତାର ସମଷ୍ଟି "ଅର୍ଘ୍ୟଥାଳୀ", ଐତିହାସିକ ଭୂମିକାରେ ରଚିତ ପଦ୍ମିନୀ ଓ ପୌରାଣିକ ଭୂମିକାରେ ରଚିତ ଅହଲ୍ୟାସ୍ତବ । ଏହା ହିଁ ହେଲା ମେହେରଙ୍କ କାବ୍ୟ-କବିତାର ଏକ ସଂକ୍ଷିପ୍ତ ତାଲିକା । ସୁତରାଂ କାବ୍ୟର ପ୍ରଥମ ନାମକରଣରୁ ହିଁ ଜଣାଯାଏ ଯେ ଗଙ୍ଗାଧରଙ୍କ କାବ୍ୟମାନସୀ ପୌରାଣିକ ପରମ୍ପରାର ପ୍ରତୀକ । କିଏ ତପସ୍ୱିନୀ, କିଏ ଆଶ୍ରମିକା, କିଏ ନୀତି ଏବଂ ରୁଚିର ଆଦର୍ଶରେ ସମନ୍ୱିତା । ପୁରୁଷ ଚରିତ୍ରମାନଙ୍କ ମଧ୍ୟରେ କିଏ ଆଦର୍ଶ ନରପତି, କିଏ ବୀର ପୁରୁଷ, କିଏ ପ୍ରଣୟଲୋଲୁପ କାମାତୁର, କିଏ ପରମ୍ପରା ପ୍ରତିଷ୍ଠିତ ଆଦର୍ଶ ବ୍ୟକ୍ତି । ଏହା ହିଁ ଗଙ୍ଗାଧରଙ୍କ କାବ୍ୟ-ନିହିତ ଚରିତ୍ରମାନଙ୍କର ପରିସର ଓ ବ୍ୟାପକତା । ଏହି ପରିସରରେ ସେହି ପୌରାଣିକ ଚରିତ୍ରମାନଙ୍କର ବୈଶିଷ୍ଟ୍ୟ ବିଚାର କରିବାକୁ ହେବ । ଏହା ହେଲା ଚାରିତ୍ରିକ ବୈଶିଷ୍ଟ୍ୟ ଦୃଷ୍ଟିରେ କାବ୍ୟର ସୃଷ୍ଟି । କିନ୍ତୁ ସେମାନଙ୍କ ମଧ୍ୟରେ ବିଷୟବସ୍ତୁଗତ ପାର୍ଥକ୍ୟ ମଧ୍ୟ ପରିଲକ୍ଷିତ ହୁଏ । ସ୍ଥାନ-କାଳ-ପାତ୍ର ବିଚାରରେ ଗଙ୍ଗା-ଧରଙ୍କ ବିଭିନ୍ନ କାବ୍ୟରେ 'ପ୍ରେମ' କପରି ବର୍ଣ୍ଣିତ ହୋଇଛି, ତାହା ବିଚାର୍ଯ୍ୟ । ପ୍ରଥମତଃ ଗଙ୍ଗାଧର ପ୍ରେମର କବି ନୁହନ୍ତି, କିନ୍ତୁ ତାଙ୍କ କାବ୍ୟ-କବିତାରେ ଉଚ୍ଚାଙ୍ଗ ନିର୍ମଳ ପ୍ରେମର ହିଁ ସନ୍ଧାନ ମିଳିଥାଏ । ଗଙ୍ଗାଧରଙ୍କ କାବ୍ୟ ସାଧନା ନାୟକନାୟିକାଙ୍କର ପ୍ରେମକୁ ଆଶ୍ରୟ କରି ନାହିଁ କିନ୍ତୁ ବିଷୟବସ୍ତୁର ବ୍ୟାପକତା ମଧ୍ୟରେ ନାୟକନାୟିକାଙ୍କର ସୁଖଲଭ୍ୟ ଜୀବନର ଇଙ୍ଗିତ ହିଁ ସ୍ପଷ୍ଟ । ପ୍ରେମ ତାଙ୍କ କାବ୍ୟକବିତାର ମୂଳ ଉତ୍ସ

ନୁହେଁ, ଅଥଚ ଜୀବନର ଅନ୍ୟାନ୍ୟ ବହୁ ଆପେକ୍ଷିକ ଘଟଣା ମଧ୍ୟରେ ହିଁ ପ୍ରେମ ସ୍ୱକୀୟ ମହିମାରେ ସୁପ୍ରତିଷ୍ଠିତ ହୋଇପାରିଛି । ତାଙ୍କର କୌଣସି କାବ୍ୟ ପ୍ରେମ-ପ୍ରଧାନ ନୁହେଁ । ପ୍ରେମରେ କାବ୍ୟର ଉତ୍ପତ୍ତି ହୋଇଥିଲେ ହେଁ ତାର ପରିଣତି ଘଟିଛି ତୁଙ୍ଗ ମାନବିକତାରେ । ଯେଉଁ ପ୍ରେମ ଆରମ୍ଭ ହୁଏ ଯୁବକଯୁବତୀଙ୍କ ଈପ୍ସିତ ଦୈହିକ ମିଳନର ଉଦ୍ଦାମ କାମନାରେ, ସେହି ପ୍ରେମର ପରିଣତି କିନ୍ତୁ ଦେହରେ କମ୍ବା ନର୍କରେ ନାହିଁ; ତାର ପରିଣତି, ତାର ପରିପୂର୍ଣ୍ଣତା ଅଛି ଅନ୍ୟ ଏକ ଅଦୃଶ୍ୟ ସ୍ତରରେ, ବରଂ ସ୍ୱର୍ଗରେ ବୋଲି କୁହାଯାଇପାରେ ।

ପ୍ରଥମେ 'ତପସ୍ୱିନୀ' କାବ୍ୟ ବିଚାର କରାଯାଉ । 'ତପସ୍ୱିନୀ' କାବ୍ୟର ବିଷୟବସ୍ତୁ ପାଠକଙ୍କ ନିକଟରେ ଅବିଦିତ ନୁହେଁ । ବାଲ୍ମୀକି ରାମାୟଣ ହିଁ ଏହି କାବ୍ୟର ଅନ୍ତରାତ୍ମା । ତେଣୁ କାବ୍ୟବର୍ଣ୍ଣିତ ଚରିତ୍ର-ମାନଙ୍କ ମଧ୍ୟରେ ସୀତା ଓ ରାମଚନ୍ଦ୍ର ହେଉଛନ୍ତି ମୁଖ୍ୟ ଉପଜୀବ୍ୟ । କାବ୍ୟଟି ଏକାଦଶ ସର୍ଗରେ ବିଭକ୍ତ । ସୀତାଙ୍କ ଜୀବନର ପୂର୍ଣ୍ଣ ଅଭିବ୍ୟକ୍ତି, ରାମଚନ୍ଦ୍ରଙ୍କ ଜୀବନର ସଂଘର୍ଷ ଏବଂ ଦ୍ୱନ୍ଦ ହିଁ ଏହି କାବ୍ୟର ପ୍ରତିପାଦିତ ବିଷୟ । ସୀତା କାବ୍ୟରେ ନିର୍ବାସିତା, ରାମଚନ୍ଦ୍ର ହୋଇଛନ୍ତି ନ୍ୟାୟପରାୟଣ ଆଦର୍ଶବାଦୀ ଶାସକ । ଏକ ଦିଗରେ ସୀତାଙ୍କର ନିର୍ବା-ସନ, ବାଲ୍ମୀକି ଆଶ୍ରମରେ ସନ୍ତାନ ପ୍ରସବ, ପତି ସୁଖରୁ ବଞ୍ଚିତା ବୈଦେହୀ, ଅନ୍ୟ ଦିଗରେ ପ୍ରାଣପ୍ରତିମ ପତ୍ନୀଙ୍କୁ ତ୍ୟାଗ କରି ରାମଚନ୍ଦ୍ରଙ୍କର ରାଜ୍ୟଶାସନ, ପ୍ରଜାପାଳନ । ଜାନକୀ ଏବଂ ଧନୁର୍ଦ୍ଧର ରାମଚନ୍ଦ୍ର, ପରସ୍ପର ବିରୋଧୀ, ଦ୍ୱନ୍ଦ୍ୱ ଏବଂ ସଂଘର୍ଷର ସମ୍ମୁଖୀନ ହୋଇଅଛନ୍ତି ।

ଏକ ଦିଗରେ ପ୍ରଜାଙ୍କର ହିତ ତଥା ନ୍ୟାୟ ଓ ଧର୍ମ ମାନଦଣ୍ଡରେ ରାଜ୍ୟପାଳନ, ଅନ୍ୟ ଦିଗରେ ରାଜାର ପ୍ରକୃତ କର୍ତ୍ତବ୍ୟ ପାଳନ ଉଦ୍ଦେଶ୍ୟରେ ସ୍ୱପତ୍ନୀଙ୍କୁ ନିର୍ବାସନ କରିବା; ଏକଦିଗରେ ଆଦର୍ଶ, ଅନ୍ୟ ଦିଗରେ ଭୋଗ । ଏହି ଦୁଇଟି ଉପାଦାନ ହିଁ ରାମଚନ୍ଦ୍ରଙ୍କୁ ବିଚଳିତ କରି-

ଥିଲ । ରାମଚନ୍ଦ୍ର କଳ୍ପ ଏକ ଗୁରୁତର ନିଷ୍ପତ୍ତି କରିଥିଲେ । ଶେଷରେ ସେ ତାଙ୍କର ଧର୍ମପତ୍ନୀଙ୍କୁ ରାମଚନ୍ଦ୍ର ଏବଂ ସୀତା ପ୍ରଥମେ ପରସ୍ପର ସହିତ ପତି ପତ୍ନୀଭାବରେ ବନ୍ଧନ-ଆବଦ୍ଧ । ରାମଚନ୍ଦ୍ର ଆର୍ଯ୍ୟପୁରୁଷ, ରାଜର୍ଷି; ମୁନିକନ୍ୟା ମୈଥିଳୀ ରାଜରାଣୀ, ସେମାନେ ପରସ୍ପର ସହଧର୍ମୀ । ପୌରାଣିକ ସ୍ତରରୁ ମେହେର ଏହି ଦୁଇ ମୁଖ୍ୟ ଚରିତ୍ରକୁ ଉତ୍ତୋଳନ କରି ସେମାନଙ୍କୁ ଆଦର୍ଶ ବର୍ତ୍ତମାନବର ସ୍ୱରୂପ ପ୍ରଦାନ କରିଛନ୍ତି । ସେମାନେ ବାଲ୍ମୀକି ରାମାୟଣ ବର୍ଣ୍ଣିତ ଛନ୍ଦରେ କମ୍ବା ଉତ୍ତର ରାମଚରିତର ପ୍ରତିଲିପିରେ ଦେବଦେବୀ ହୋଇପାରନ୍ତି, ମାତ୍ର ମେହେର କାବ୍ୟର ସାମାଜିକ ପ୍ରୟୋଜନ ଦୃଷ୍ଟିରେ ସେମାନଙ୍କୁ ଦେବଦେବୀ ସ୍ତରରୁ ଆଣି ସାଧାରଣ ଚରିତ୍ର ସ୍ତରରେ ଉପସ୍ଥାପନ କରିଛନ୍ତି । ରାମଚନ୍ଦ୍ର ସ୍ୱାମୀ ଭାବରେ ସୀତାଙ୍କୁ ଭଲ ପାଆନ୍ତି ଏବଂ ପତ୍ନୀଭାବରେ ସୀତାଙ୍କର ଆନୁଗତ୍ୟ ମଧ୍ୟ ଅସାଧାରଣ । ସେମାନଙ୍କର ପ୍ରେମ ସ୍ୱର୍ଗୀୟ, ଆଦର୍ଶପୂତ ଏବଂ ଅନନ୍ୟସାଧାରଣ । ସ୍ତ୍ରୀ, ପୁରୁଷର ମିଳନରେ ପ୍ରେମର ପୂର୍ଣ୍ଣତା ମାତ୍ର । ସେମାନଙ୍କର ବିଚ୍ଛେଦରେ ପ୍ରେମର ପ୍ରକୃତ ପରୀକ୍ଷା ହୋଇଥାଏ । ତେଣୁ ମିଳନ ଅପେକ୍ଷା ବିରହ ହିଁ ପ୍ରେମର ଅଧିକ ନିଦ୍ଧାମକ । ବିରହରେ ହିଁ ପ୍ରେମର ବାସ୍ତବତା କମ୍ବା ଅସାରତା ପ୍ରତିପାଦିତ ହୋଇଥାଏ । "ତପସ୍ୱିନୀ"ରେ ଜାନକୀ ସ୍ୱାମୀଙ୍କ ଦ୍ୱାରା ନିର୍ବାସିତା । ତେଣୁ ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ଅର୍ଥାତ୍ ସୀତାଙ୍କର ଗଭୀର ସ୍ୱାମୀଭକ୍ତି ଏହି ଘୋର ନିର୍ବାସନରେ ପରିସ୍ଫୁଟ ହୋଇପାରିଛି । ତେଣୁ ସୀତାଙ୍କ ଚରିତ୍ରରେ ସମସ୍ତ ପୁରମ୍ପରିକ ବୃତ୍ତିର ସୌନ୍ଦର୍ଯ୍ୟ ପରିଲକ୍ଷିତ ହୁଏ । ସୀତା ବାସ୍ତବିକ ପତିବ୍ରତା, ସ୍ୱାମୀ ସୋହାଗିନୀ ଏବଂ ସର୍ବଦା ସ୍ୱାମୀପ୍ରାଣା । ପତିବ୍ରତା ନାରୀର ଅଶ୍ରୁରେ ଆରଣ୍ୟକ ପ୍ରକୃତି ମଧ୍ୟ ଦୟା ବିଗଳିତ ।

ସାଧ୍ୱୀ କୁଳବଧୂଙ୍କର ଦୁର୍ବିପାକ ଚାହିଁ
ଲଜ୍ଜାଭରେ ଭାନୁ ଦେଲେ ବଦନ ଲୁଚାଇ । (ତପସ୍ୱିନୀ)

ନୈରାଶ୍ୟରେ ମଧ୍ୟ ସୀତାଙ୍କ ସମ୍ମୁଖ ସଂସାର ରାମଚନ୍ଦ୍ରମୟ । ପ୍ରଥମ ସର୍ଗରେ ସୀତା ସ୍ୱୀକାର କରିଛନ୍ତି ଯେ ତାଙ୍କର ସ୍ୱାମୀ କପଟ ପତ୍ନୀପ୍ରେମରେ ବହ୍ୱଳ । ଚତୁର୍ଦ୍ଦଶ ବର୍ଷ ବନବାସ ସମୟରେ ରାମଚନ୍ଦ୍ର ସୀତାଙ୍କ ପ୍ରତି ଯେଉଁ ସ୍ୱର୍ଗୀୟ ପ୍ରେମ ପ୍ରଦର୍ଶନ କରିଥିଲେ, ତାହା ବର୍ତ୍ତମାନ ବିରହାବସ୍ଥାରେ ସୀତାଙ୍କର ମନେ ପଡ଼ୁଛି । ସୀତାଙ୍କର ଭାଷାରେ—

"କେତେ ସ୍ନେହ ଢାଳୁଥିଲ ମୋ ଉପରେ ବନେ
କେମନ୍ତେ ଭୁଲିବି ତାହା ଭେଦଉଛି ଜୀବନେ ।
ତୁଚ୍ଛ ଦାସୀ ହେବ ବୋଲି କ୍ଷୁଧାରେ ଆକୁଳ
ଗହନେ ସଅଳେ ଆଣୁଥିଲ ଫଳମୂଳ ।"

( ତପସ୍ୱିନୀ-ପ୍ରଥମ ସର୍ଗ )

ସ୍ତ୍ରୀ-ପୁରୁଷ ମଧ୍ୟରେ ଅନାବିଲ ପ୍ରେମ ଏବଂ ଗଭୀର ଆସକ୍ତିର ଆଉ ଅଧିକ ପ୍ରମାଣ କ'ଣ ଥାଇପାରେ ? ନାରୀ କେବଳ ପ୍ରେମ ପାଇଁ ଉଦ୍ଦିଷ୍ଟ ନୁହେଁ; ବୈଚିତ୍ର୍ୟମୟ ରୂପବତୀ ନାରୀ ଯୁଗେ ଯୁଗେ କବିଙ୍କୁ ପାଗଳ କରିଛି । ନାରୀର ସ୍ୱର୍ଗୀୟ ଗୁଣରାଜି ନିକଟରେ ଦେବତା ମଧ୍ୟ ପରାସ୍ତ । ଶେଷରେ ସ୍ୱାମୀ-ଦଣ୍ଡିତା ସୀତା ସ୍ୱାମୀଙ୍କ ଉପରେ ଦୋଷାରୋପ କରି ନାହାନ୍ତି; ବରଂ ବିରହିଣୀ ନିର୍ବାସିତା ପତ୍ନୀଙ୍କର କାର୍ଯ୍ୟରେ ସ୍ୱାମୀ ପ୍ରତି କି ପ୍ରକାର ଅତୁଳ ଆସକ୍ତି ପ୍ରକାଶ ପାଇଛି, ତାହା ଅନୁଧ୍ୟାନଯୋଗ୍ୟ । ସେ କଠୋର ପ୍ରଜାପାଳନ ପ୍ରତିଜ୍ଞାବଦ୍ଧ ସ୍ୱାମୀଙ୍କର ଉପଯୁକ୍ତ ସହଧର୍ମିଣୀ ।

"ପରଜା-ରଞ୍ଜନ ବ୍ରତେ ଅଟ ତୁମ୍ଭେ ବ୍ରତୀ
ମୁଁ ସହଧର୍ମିଣୀ ତୁମ୍ଭ ପଦାଙ୍କ ମୋ ଗତି ।
ହେଉ ମୋର ନିର୍ବାସନ ପ୍ରକୃତିର ତୋଷ
ପ୍ରଭୁଙ୍କର ବ୍ରତ ହେଉ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ।"

ଅବସ୍ଥାଧୀନ ନଷ୍ଟୁର ରାମଚନ୍ଦ୍ରଙ୍କ ବହେଧରେ ସୀତାଙ୍କର ଏହା ହିଁ ପ୍ରତିକ୍ରିୟା । ମାତ୍ର କବି ସମସ୍ତ ଦୁଃଖ-ନୈରାଶ୍ୟ ମଧ୍ୟରେ ପୌରାଣିକ ସୀତାଙ୍କୁ ଆଦର୍ଶ ପ୍ରେମିକା ରୂପ ଚିତ୍ରଣ କରିଛନ୍ତି । କିନ୍ତୁ ବାଲ୍ମୀକ ଭବଭୂତିଙ୍କଠାରୁ ବ୍ୟତିକ୍ରମ ଦେଖାଇ ସେ ସୀତାଙ୍କୁ ସାଧାରଣ ନାରୀଜଗତର ଶିରୋମଣିରୂପେ ବର୍ଣ୍ଣନା କରିଛନ୍ତି । ତାହାର କାରଣ କବିଙ୍କର ମାନସପଟ୍ଟରେ ପ୍ରେମର ଆଦର୍ଶ ପରିକଳ୍ପନା ଏକ ସୁସ୍ଥ ବଳିଷ୍ଠ ରୂପ ପାଇପାରିଛି । ଆଦର୍ଶ ପ୍ରେମ ଜଗତରେ ନାରୀ ସ୍ୱାମୀଠାରୁ ତିରସ୍କାର ପାଇ ମଧ୍ୟ ସ୍ୱାମୀର ପଦତଳେ ଆଶ୍ରୟ ନେବା ପାଇଁ ବ୍ୟାକୁଳ । ସେ ତାହାର ହୃଦୟ ସ୍ୱାମୀ ପଦତଳେ ଅଜାଡ଼ି ଦିଏ । ସ୍ୱାମୀର ଦୁଃଖରେ ତା'ର ଦୁଃଖ; ସ୍ୱାମୀର ସୁଖରେ ମଧ୍ୟ ତାର ସୁଖ । ମେହେରଙ୍କ କାବ୍ୟରେ ସୀତାଚରିତ୍ର ଏକ ଅପୂର୍ବ ଏବଂ ଅନନ୍ୟସାଧାରଣ ସୃଷ୍ଟି । ସୀତା ଯେବେ ଆଦର୍ଶ ପତ୍ନୀ, ଆଦର୍ଶ ପ୍ରେମିକା ଏବଂ ଶେଷରେ ଆଦର୍ଶ ଜନନୀ ହୁଅନ୍ତି, ତେବେ ରାମଚନ୍ଦ୍ର ସୀତାଙ୍କ ଅପେକ୍ଷା ପ୍ରେମଜଗତରେ କମ ତ୍ୟାଗ ପ୍ରଦର୍ଶନ କରି ନାହାନ୍ତି । କର୍ତ୍ତବ୍ୟଦୃଷ୍ଟିରେ ସେ କଠୋର ହୋଇଥିଲେ । ମାତ୍ର ତାଙ୍କର ହୃଦୟ ବରାବର ସୀତାଙ୍କର ଭାବନାରେ ଦଗ୍ଧ । ରାମଚନ୍ଦ୍ର ନିଜେ ମଧ୍ୟ ତୃତୀୟ ସର୍ଗରେ ଏହାର ସଫେଇ ଦେଇଛନ୍ତି ।

ରାମଚନ୍ଦ୍ର ଆଦର୍ଶ ପ୍ରେମିକ, କିନ୍ତୁ ରାଜନୈତିକ କର୍ତ୍ତବ୍ୟ ନିକଟରେ ତାଙ୍କର ପରିସର ଏକରକମ ସୀମାବଦ୍ଧ । ମାତ୍ର ତାଙ୍କର ବିବେକ ଏଥି-ପାଇଁ ବହୁବାର ଅନୁତପ୍ତ । କବି ସେଥିପାଇଁ ଆଦର୍ଶ ପ୍ରେମିକ ରାମଚନ୍ଦ୍ରଙ୍କ ମୁଖରେ କହିଛନ୍ତି—

ପ୍ରିୟା ମଇଥିଳୀ— ବିରହେ ଶିଥିଳୀ
କ୍ଷତ କରି ପ୍ରାଣ ଯେବେ

ନ କରିବ କାର୍ଯ୍ୟ      ମାନବ-ସମାଜ
ଆନ୍ତର ଗର୍ଜ୍ଜିବ ତେବେ ।
ବୋଲିବ ସଂସାର      ରାମ କୁଳାଙ୍ଗାର
ଜନ୍ମ ଲଭି ରଘୁବଂଶେ
ବର୍ବର କୁଟଣି      ହୋଇ ରାଜଟଣୀ
ତ୍ୟାଗେକଲା ବଧୂ ବରେଣେ ।
( ତପସ୍ୱିନୀ-ତୃତୀୟ ସର୍ଗ )

କେବଳ ସେତିକି ନୁହେଁ, ସୀତା ଜାଣନ୍ତି ଯେ ରାମଚନ୍ଦ୍ରଙ୍କର ହୃଦୟ ବରାବର ପ୍ରେମଜର୍ଜ୍ଜରିତ । ଗଙ୍ଗାଧର ପ୍ରକୃତି ଉପାସକ ସ୍ରଷ୍ଟା । ପ୍ରକୃତିରେ ମାନବତ୍ୱ ଆରୋପ କରିବା ତାଙ୍କର ସୃଷ୍ଟିର ମହତ୍ତ୍ୱ । ସେଥିପାଇଁ ଆଦର୍ଶ ପ୍ରେମିକ ରାମଚନ୍ଦ୍ର, ଆଦର୍ଶ ପ୍ରେମିକା ବୈଦେହୀଙ୍କ ପ୍ରଭାବରେ ଉତ୍ତୁଙ୍ଗ ଆକାଶର ତାରକାଗଣ ମଧ୍ୟ ଓତଃପ୍ରୋତ ଭାବରେ ଜଡ଼ିତ । ଆରଣ୍ୟକ ପ୍ରକୃତିର ତରୁଲତା ମଧ୍ୟ ସୀତାଙ୍କର ସ୍ପର୍ଶ ପାଇବା-ପାଇଁ ଲାଳାୟିତ । କାରଣ ସୀତା ହେଉଛନ୍ତି ସତୀ ସ୍ତ୍ରୀ, ସେଥିପାଇଁ ପତିବ୍ରତାର ଅଙ୍କସାନ୍ନିଧ୍ୟ ସେମାନଙ୍କର କାମ୍ୟ । ସତୀ ସୀତାଙ୍କର ଏହି ପବିତ୍ର ପ୍ରଭାବ ବାଲ୍ମୀକି ଆଶ୍ରମରେ ସର୍ବତ୍ର ବିଦ୍ୟମାନ । କି ବୃକ୍ଷଲତା, କି ଜୀବଜନ୍ତୁ ପ୍ରତ୍ୟେକ ସତୀଙ୍କର ପ୍ରେମାଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ । ଷଷ୍ଠ ସର୍ଗରେ ମଧ୍ୟ ରାମଚନ୍ଦ୍ରଙ୍କ ମୁଖରେ ସୀତାଙ୍କର ତୁଙ୍ଗ ତ୍ୟାଗପୂତ ଆଦର୍ଶର ପ୍ରଶଂସା ଶୁଣିବାକୁ ମିଳେ । ତପସ୍ୱିନୀ ସୀତା ନିୟତି ହସ୍ତରେ କନ୍ଦୁକ ସଦୃଶ । ସେ ତେଣୁ ତାଙ୍କର ଦୁଃଖଦୁର୍ଗତି ନିମନ୍ତେ ନିୟତିକୁ ଦୋଷୀ ସିନା କରିଛନ୍ତି, ତାଙ୍କର ସୋହାଗୀ ସ୍ୱାମୀଙ୍କୁ କେଉଁଠାରେ ହେଲେ ତିଳେ ମାନ ଅଭିଯୁକ୍ତ କରି ନ ଥିଲେ । ବରଂ ତାଙ୍କ ମନରେ ଅନୁଚିନ୍ତା ଯେ ରାମଚନ୍ଦ୍ର କିପରି ଦୁଃଖରେ ଏକାକୀ ସମୟ ଯାପନ କରୁଥିବେ । ଠିକ୍ ଅଷ୍ଟମ ସର୍ଗରେ ସେହିପରି କବି ସୀତାଙ୍କ ମୁହଁରେ

ଚନ୍ଦ୍ରମା ଏବଂ ମଲ୍ଲିକା ସହିତ କଥୋପକଥନ ଛଳରେ ଆଦର୍ଶ ପ୍ରେମର ନିଗୂଢ଼ତତ୍ତ୍ୱ ବିଶ୍ଳେଷଣ କରିଛନ୍ତି ।

ବୋଇଲେ ଚନ୍ଦ୍ରମା ଗୋ ଅନ୍ତୁ ସାଧବୀ
ଦିଶୁଛି ତୋତେ ପୁଣ୍ୟମୟୀ ଦେବୀ ।
ବିଶ୍ୱରେ ମୁହିଁ ତୋର ଅଟେ ଭଗିନୀ
ତୋ ପରି ସ୍ୱାମୀ-ସ୍ନେହ ଭୋଗିଲି କିନେ ।
( ଅଷ୍ଟମ ସର୍ଗ–ତପସ୍ୱିନୀ )

ରାମଚନ୍ଦ୍ର ସୀତାଙ୍କର ସଚ୍ଚରିତ୍ର ସମ୍ପର୍କରେ ଏକଦମ ନିଶ୍ଚିନ୍ତ ଏବଂ ସେ ସୀତାଙ୍କୁ ପୂର୍ଣ୍ଣ ବିଶ୍ୱାସ କରୁଥିଲେ, ଏହା ନିଜେ ସୀତା ନିଜର ଅନାବିଳ ପ୍ରେମଦୃଷ୍ଟିରେ ଅନୁଭବ କରି ପାରିଥିଲେ । "ମୋ ଅନୁକୂଳେ ହେଲା ଆକାଶବାଣୀ, ସଚ୍ଚରିତ୍ର ମୋର ପ୍ରଭୁ ପାରିଲେ ଜାଣି ।"

ତପସ୍ୱିନୀର ସୀତା ଚରିତ୍ର "ପ୍ରଣୟ ବଲ୍ଲରୀ"ର ଶକୁନ୍ତଳା ଚରିତ୍ର ସହିତ ଅନୁକୂଳ ଭାବରେ ତୁଳନୀୟ । ସୀତାଙ୍କର ମୁଖନିଃସୃତ—

"ମୋ ତନୁ ଦଗ୍ଧ ହେଲେ ହେବ ତ ଖାର
ତାହାକୁ କରାଇବ ପାଦପେ ସାର ।
ସେ ତରୁ କାଷ୍ଠ ଦେଇ ବର୍ଦ୍ଧକୀ ହସ୍ତେ
କରାଇ ଦେବ ପ୍ରଭୁ ପାଦୁକା ମତେ ।"

ଦୁଷ୍ମନ୍ତଙ୍କ ଦ୍ୱାରା ପରିତ୍ୟକ୍ତା ଆଶ୍ରମବାସିନୀ, ସରଳପ୍ରାଣା ଶକୁନ୍ତଳାଙ୍କ ମୁଖରେ ପ୍ରତ୍ୟାଖ୍ୟାନ ସମୟର କରୁଣ କ୍ରନ୍ଦନ—

"ଯେଉଁ ବଚନ ମୋ ଜୀବନ କିଣିଲା
ଶୁଣୁଅଛି ସେହି ସ୍ୱର

କମଳିନୀ କେବେ ବିକଶି ଅଛି କି
ନ ରହିଁ ନିଜେ ଭାସ୍କର ।"
( ପଞ୍ଚମ ସର୍ଗ-ପ୍ରଣୟ ବଲ୍ଲରୀ )

ସତ୍ପ୍ରିତ ବେଶ୍ ଐକ୍ୟ ଓ ଅନୈକ୍ୟ ଭାବରେ ତୁଳନୀୟ । ରାଜ-ସିଂହାସନ ଉଭୟ ତପସ୍ୱିନୀ ଓ ପ୍ରଣୟ ବଲ୍ଲରୀ କାବ୍ୟରେ ସଙ୍ଘର୍ଷର କ୍ଷେତ୍ର ହୋଇଛି, ମାତ୍ର ତାହାଦ୍ୱାରା ହିଁ ରାମଚନ୍ଦ୍ର ଓ ଦୁଷ୍ମନ୍ତଙ୍କର ଆଦର୍ଶ ପ୍ରେମ ପରୀକ୍ଷିତ ହୋଇଥିଲା । ଅବଶ୍ୟ ସ୍ୱାମୀର ଆଦର୍ଶ, ଚରିତ୍ର ଆଦର୍ଶ, ପ୍ରେମିକ ଭାବରେ ରାମଚନ୍ଦ୍ର ଦୁଷ୍ମନ୍ତଙ୍କଠାରୁ ଢେର ଉଚ୍ଚସ୍ତରରେ । ସେଦିନର ରୂପବତୀ ଲଜ୍ଜାଶୀଳା ଆଜି ଅନ୍ତଃସତ୍ତ୍ୱା, କିନ୍ତୁ ସେଦିନର ପ୍ରେମିକ ଆଜି ଶକୁନ୍ତଳାଙ୍କୁ ଗ୍ରହଣ କରିବାରେ କୁଣ୍ଠିତ । ଏହି କୁଣ୍ଠା ଓ ବିସ୍ମୃତି ବରଂ ଦୁଷ୍ମନ୍ତଙ୍କ ଚରିତ୍ରରେ ଗ୍ଲାନି ଆଣିଛି । ମାତ୍ର ଶକୁନ୍ତଳା ଚରିତ୍ରରେ ଅପୂର୍ବତ୍ୱ ବିକଶିତ ହୋଇଛି । ଗଙ୍ଗାଧରଙ୍କ କାବ୍ୟରେ ବର୍ଣ୍ଣିତ ନାୟିକାର ଦୈହିକ ମିଳନ ଲିପ୍ସା ଅପେକ୍ଷା ଅନାବିଳ ପ୍ରେମ ପ୍ରତୀତି ଅଧିକ ପରିସ୍ଫୁଟ । ଦୁଷ୍ମନ୍ତଙ୍କର ପ୍ରଥମ ଦର୍ଶନରେ ଶକୁନ୍ତଳାଙ୍କ ମନରେ ସନ୍ଦେହ ଦେଖାଦେଇଥିଲା । ମୋ ମନରେ ଏପରି ଭାବାନ୍ତର କାହିଁକି ? ଆଶ୍ରମର ପରିବେଷ୍ଟନୀ ଶାନ୍ତରସ ପରିପୂର୍ଣ୍ଣ । ତେବେ ସେଠାରେ ଶୃଙ୍ଗାରରସର ଆବିର୍ଭାବ । ସ୍ୱର୍ଗ ସ୍ତରରେ ଗଙ୍ଗାଧର ଅନାବିଳ ମାନବିକ ପ୍ରେମର ପକ୍ଷ ସମର୍ଥନ କରିଛନ୍ତି । କେତେବେଳେ ସେହି ପ୍ରେମ ବାତ୍ସଲ୍ୟାନୁରାଗ ରଞ୍ଜିତ ହୋଇଥିଲା । ଦୈହିକ ମିଳନ ପ୍ରେମର ଶେଷ ଅଭିବ୍ୟକ୍ତି ନୁହେଁ, ବରଂ ଆତ୍ମିକ ଆଦାନ ପ୍ରଦାନ ହିଁ ପ୍ରେମର ଅନ୍ତିମ ପରିଣତି । ସେଥିପାଇଁ ଉତ୍ଥାନ ପତନ, ଜୟ ପରାଜୟ; ବିରହ ମିଳନ ମଧ୍ୟରେ ସୀତା ଏବଂ ରାମଚନ୍ଦ୍ରଙ୍କର ଆଦର୍ଶ ପ୍ରେମିକ ଜୀବନ ପରିସ୍ଫୁଟ । ବୈଦେହୀର କାରୁଣ୍ୟ ବିସ୍ମୃତିର ବ୍ୟଥା ମଧ୍ୟରେ

ଦୁଷ୍ମନ୍ତ-ଶକୁନ୍ତଳାଙ୍କର ଅମର ପ୍ରେମ କାବ୍ୟ-ପୂର୍ଣ୍ଣାଙ୍ଗ ହୋଇ ପାରିଥିଲା । ନରନାରୀ ମଧ୍ୟରେ, ତରୁଣତରୁଣୀ ମଧ୍ୟରେ ଦୈହିକତୃପ୍ତି ମାଧ୍ୟମରେ ପ୍ରେମର ଶରନ୍ତନତ୍ୱ ପ୍ରତିଷ୍ଠିତ ହୁଏ । ତେଣୁ ପ୍ରେମ ଗୌଣ । ମାତ୍ର ଐକାତ୍ମକ ପ୍ରାଣପ୍ରତିଷ୍ଠ ପ୍ରେମ ହିଁ ମୁଖ୍ୟ । ତାହା ଯୁଗାନ୍ତର ବ୍ୟାପୀ ଏବଂ ମାନବ ସମାଜ ଉପରେ ତାର ପ୍ରଭାବ ମଧ୍ୟ ସ୍ଥାୟୀ । ଗଙ୍ଗାଧରଙ୍କ କାବ୍ୟ-କବିତାରେ ଦୈହିକ ପ୍ରେମରୁ ଅମର ପ୍ରେମର ଅମର ମାନବାତ୍ମାର ଜନ୍ମ । 'ପ୍ରଣୟ ବଲ୍ଲରୀ' ପ୍ରଥମ ଭାଗରେ ଶକୁନ୍ତଳା ଲଜ୍ଜାବତୀ, ପ୍ରେମ ନିଷ୍ଠାବତୀ; କିନ୍ତୁ ତାଙ୍କର ସଖୀ ପ୍ରିୟମ୍ବଦା ଏବଂ ଅନୁସୂୟା ପ୍ରଗଲ୍‌ଭା । ଶକୁନ୍ତଳା ଚରିତ୍ର କଦାପି ଗତାନୁଗତିକ ନୁହେଁ । ବରଂ ସମାଜରେ ଏହା ଏକ ଶକ୍ତିଶାଳୀ ଚରିତ୍ର । ବାସ୍ତବିକ ସୀତା, ଶକୁନ୍ତଳାଙ୍କ ନୈଷ୍ଠିକ, କାନ୍ତସର୍ବସ୍ୱ ପ୍ରେମ ନିକଟରେ କୀଚକଦୂତୀର ନାରୀତ୍ୱ କି ହୀନ, କି ନିମ୍ନଶ୍ରେଣୀର ! ସୀତା, ଶକୁନ୍ତଳା ଯେବେ ସ୍ୱର୍ଗର ଆଦର୍ଶମୟ କନ୍ୟା ହୁଅନ୍ତି, ତେବେ ଇନ୍ଦୁମତୀ, ପଦ୍ମିନୀ, ଭାରତର ପାରମ୍ପରିକ ସମାଜରେ ଅବଶ୍ୟ ପ୍ରାତଃସ୍ମରଣୀୟା । ଗଙ୍ଗାଧରଙ୍କର "କୀଚକବଧ" ମଧ୍ୟ ପୌରାଣିକ ତାତ୍ତ୍ୱିକତାରେ ପରିପୂର୍ଣ୍ଣ । ସୈରିନ୍ଧ୍ରୀଙ୍କ ସମ୍ମୁଖରେ କମ ପ୍ରଲୋଭନ ନ ଥିଲା । କିନ୍ତୁ ତାଙ୍କର ନାରୀ-ମନ ପ୍ରତ୍ୟେକ କ୍ଷେତ୍ରରେ ବିଦ୍ରୋହ କରିଛି । ଲମ୍ପଟ୍ୟପୂର୍ଣ୍ଣ ହୀନପ୍ରବୃତ୍ତିଚାଳିତ 'କୀଚକ'ର କି ପତନ ସତେ ! ଆଦର୍ଶ ପ୍ରେମ ନିକଟରେ ନାୟିକାର ଦୈହିକ ରୂପ ମଧ୍ୟ ନିଷ୍ପ୍ରଭ । କଣ୍ୱମୁନିଙ୍କ ଆଶ୍ରମର ଆରଣ୍ୟକ ବୃକ୍ଷଲତା ଗହଣରେ ଶକୁନ୍ତଳା ଲାଳିତାପାଳିତା । ସେ ରୂପବତୀ, ଲଜ୍ଜାବତୀ । ଦୁଷ୍ମନ୍ତ ନରେଶଙ୍କ ଦର୍ଶନ ଲାଭ ପରେ ସେ ହୁଅନ୍ତି ଆତ୍ମବିହ୍ୱଳା, ସେ ବିମୁଗ୍ଧା ହୋଇ ଯାଇଛନ୍ତି । ଫଳରେ ତାଙ୍କର ଆତ୍ମବିସ୍ମୃତି ଘଟିଥିଲା । ଦୁଷ୍ମନ୍ତଙ୍କ ପ୍ରେମ-ଚିନ୍ତାରେ ସେ ଏତେଦୂର ଆତ୍ମହରା ଯେ ଦୁର୍ବାସାଙ୍କ ପ୍ରତି ମଧ୍ୟ ଯଥାର୍ଥ ଦୃଷ୍ଟି ଦେଇ ପାରି ନ ଥିଲେ । ଆଶ୍ରମର ଅତିଥିଙ୍କ ପ୍ରତି ଅପମାନ

ଫଳରେ ପ୍ରେମନିମଗ୍ନମାନା ଶକୁନ୍ତଳା ଦୁର୍ବାସାଙ୍କର ଅଭିଶାପ ଭୋଗିଥିଲେ ।

ଯେଉଁ ପୂଜ୍ୟ ପୂଜା ବ୍ୟତିକ୍ରମ ଫଳ
ଯାଁ'ଠାରେ ରଖିଛୁ ଲଯ୍ୟ
ସେ ତୋତେ ଚିହ୍ନିବ ନାହିଁ ତୁ ଦେଲେ ହେଁ
ଆପଣାର ପରିଚୟ ।

ଏହା କଣ ତାଙ୍କ ଆଦର୍ଶ ପ୍ରେମର ପ୍ରମାଣ ନୁହେଁ ?

ଅଥଚ ଦୁଷ୍ମନ୍ତ ରାମଚନ୍ଦ୍ରଙ୍କ ତୁଲ୍ୟ, ନିଜ କର୍ତ୍ତବ୍ୟରେ ଅଟଳ । ଗଙ୍ଗାଧର ଶକୁନ୍ତଳାଙ୍କୁ ପ୍ରକୃତ ନାରୀରୂପେ ଚିତ୍ରିତ କରିଛନ୍ତି । ତେଣୁ ପ୍ରେମ ପ୍ରଭାବିତ ଆତ୍ମବିସ୍ମୃତି ତାଙ୍କର ଚରିତ୍ରର ସୌନ୍ଦର୍ଯ୍ୟର ପ୍ରତିପାଦନ କରିଥାଏ । ପ୍ରତ୍ୟାଖ୍ୟାନ ସମୟର କଥୋପକଥନ ଶକୁନ୍ତଳା ଚରିତ୍ରର ପବିତ୍ରତା, ଧାର୍ମିକତା ତଥା ପ୍ରେମଅନାବିଲତା ଆହୁରି ସୁଦୃଢ଼ କରିଅଛି । କିନ୍ତୁ ଦୁଷ୍ମନ୍ତଙ୍କର ଗୋଟିଏ ଯୁକ୍ତି ଅତି ଅଦ୍ଭୁତ ପରି ଜଣାପଡ଼େ । ତାହା ହେଉଛି—

"ସ୍ୱଭାବତଃ ନାରୀ ଦେବେ ଏତେ ଲୋଡ଼ି
ଥାଏ ନର-ପ୍ରୀତି-ପାଶ,
ନଳରୂପ ଧରି ଥିଲେ ଦେବେ ବନ୍ଧ
ଦମୟନ୍ତୀ-ଲଭ-ଆଶ ।"

( ପ୍ରଣୟ ବଲ୍ଲରୀ )

ମାତ୍ର ଶକୁନ୍ତଳା, ତପସ୍ୱିନୀର ସୀତାଙ୍କ ପରି ମଧ୍ୟ ଭାଗ୍ୟବାଦିନୀ । ମାତ୍ର, ଧର୍ମ ହିଁ ତାଙ୍କ ପ୍ରେମ ଉପରେ ଗଭୀର ପ୍ରଭାବ ପକାଇଥିଲା । ସେହି ଧର୍ମବଳ ହିଁ ଶକୁନ୍ତଳାଙ୍କର ଆଦର୍ଶ, ଏକନିଷ୍ଠ ପ୍ରେମର ଏକମାତ୍ର

ସହାୟକ ହୋଇଥିଲା । ପ୍ରେମଜଗତରେ ଆଦର୍ଶ ଅନୁସରଣ କଲେ, ଶେଷରେ ଏପରି ଦୁଃଖ, ନୈରାଶ୍ୟ ଭୋଗ କରିବାକୁ ପଡ଼େ । ଶକୁନ୍ତଳା ନିଜକୁ ଅଭାଗିନୀ ମନେ କରିପାରନ୍ତି, ମାତ୍ର ଲୋକସମାଜ ଦୃଷ୍ଟିରେ ଶକୁନ୍ତଳାଙ୍କର ସ୍ଥାନ କେଉଁଠି ? ଶକୁନ୍ତଳା ନିଜର ଚରିତ୍ରବଳ ବଳରେ ସମସ୍ତଙ୍କର ସହାନୁଭୂତିର ଅଧିକାରିଣୀ । ଅକ୍ଷତ, ଅବିଭାଜ୍ୟ ପ୍ରେମ ହିଁ ନାରୀସମାଜରେ ତାଙ୍କର ଗୌରବାନ୍ୱିତ ସ୍ଥାନ ନିର୍ଣ୍ଣୟ କରି ସାରିଛି । ଇନ୍ଦୁମତୀ କାବ୍ୟରେ ଗଙ୍ଗାଧର ଇନ୍ଦୁମତୀଙ୍କର ପରିଚୟ ବେଶ୍ ମନୋଜ୍ଞ ଭାଷାରେ ପରିସ୍ଫୁଟ କରିଛନ୍ତି :--

ଧନ୍ୟା ଇନ୍ଦୁମତୀ ଅତି ଭାଗ୍ୟବତୀ
ଭାଗ୍ୟେ କଲେ ସ୍ୱୟମ୍ବର
ଭାଗ୍ୟଦେବୀଙ୍କର କରୁଣା ନ ହେଲେ
ଲଭିଥାନ୍ତେ କି ଏ ବର ?

( ଇନ୍ଦୁମତୀ )

ଆଧୁନିକ ସମାଜର ପଥଭ୍ରଷ୍ଟ ସ୍ୱାମୀ-ସ୍ତ୍ରୀଙ୍କ ବିରୋଧରେ ଅଜ ଏବଂ ଇନ୍ଦୁମତୀଙ୍କ ଚରିତ୍ର ସମ୍ଭବତଃ ସର୍ବାପେକ୍ଷା ଅଧିକ ବଳିଷ୍ଠ ଚରିତ୍ର । ଅଜ ଇନ୍ଦୁମତୀଙ୍କ ପ୍ରତି ଯେପରି ଆକୃଷ୍ଟ, ଇନ୍ଦୁମତୀ ମଧ୍ୟ ସେହିପରି ଅଜଙ୍କ ପ୍ରତି ଆକୃଷ୍ଟା । ଦୁହେଁ ରାଜ୍ୟରେ ମଙ୍ଗଳାଦର୍ଶ ସ୍ଥାପନ କରି ପାରିଛନ୍ତି । କବିଙ୍କର ଭାଷାରେ—

ଇନ୍ଦୁମତୀଠାରେ ଅଟଳ ସୁସ୍ନେହ
ଅଜ କରି ସଂସ୍ଥାପନ
ଦମ୍ପତି-ପ୍ରଣୟ- ବିଳାସରେ ସୁଖେ
ସମୟ କଲେ ଯାପନ ।

ତେଣୁ ପ୍ରେମର କି ପ୍ରକାର ଆତ୍ମିକ ବିଶ୍ଳେଷଣ ଏହି କାବ୍ୟରେ ପ୍ରଦତ୍ତ ହୋଇଛି, ତାହା ଅନୁମେୟ । ପ୍ରଥମରୁ ବୁଝିହୋଇଛି ଯେ ଗଙ୍ଗାଧରଙ୍କ

କାବ୍ୟ-ମାନସ ବରାବର ସୁଦୃଢ଼ ସାମାଜିକ ଆଦର୍ଶମୁଖୀ । ନିର୍ମଳ ପ୍ରେମ ମାଧ୍ୟମରେ ଗଙ୍ଗାଧର ଗଢ଼ିଛନ୍ତି ଉଦାର ବ୍ୟକ୍ତିତ୍ୱ । କବି ଗଙ୍ଗାଧର ହେଉଛନ୍ତି ଜଣେ ସ୍ୱଦେଶପ୍ରେମୀ ଜାତୀୟତାବାଦୀ ସାମାଜିକବୋଧସମ୍ପନ୍ନ ପ୍ରତିଷ୍ଠିତ କବି । ତେଣୁ ତାଙ୍କର ନାୟକନାୟିକାମାନେ ସାର୍ବଜନୀନ ବିଶ୍ୱପ୍ରୀତିର ଭକ୍ତ । ଗଙ୍ଗାଧରଙ୍କ ଅନ୍ୟାନ୍ୟ କାବ୍ୟସୃଷ୍ଟି ମଧ୍ୟରେ ଆମ୍ଭେମାନେ ଦେଖିବାକୁ ପାଉଁ ପ୍ରେମର ସେହି ଆଦର୍ଶାନୁମୋଦିତ ଚିତ୍ର । କବିଙ୍କର ସାମାଜିକ ପରିବେଷ୍ଟନୀ ଯାହା ଥିଲା, ସେଥିରେ ସେ କେବଳ ସତ୍ୟ-ଶିବ-ସୁନ୍ଦରର ସ୍ୱପ୍ନ ଦେଖିଥିଲେ । କବିଙ୍କର ପରିକଳ୍ପିତ କାବ୍ୟ-ନାୟିକାର ସ୍ୱରୂପ ହେଉଛି ବିଶ୍ୱର ବିରାଟ ସମଗ୍ରତା । ତେଣୁ ସୀତାଙ୍କଠାରୁ ଆରମ୍ଭ କରି ଶକୁନ୍ତଳା, ଇନ୍ଦୁମତୀଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ନାୟିକା; ପୁଣି ରାମଚନ୍ଦ୍ରଙ୍କଠାରୁ ଆରମ୍ଭ କରି ଦୁଷ୍ମନ୍ତଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ପୁରୁଷ ଆଦର୍ଶ ପ୍ରେମମାନଦଣ୍ଡରେ ସମଗ୍ର ମାନବଜାତିର ନମସ୍ୟ ହୋଇଛନ୍ତି । ତାଙ୍କର କୌଣସି କାବ୍ୟରେ ପ୍ରେମ ମୁଖ୍ୟ ବିଷୟ ନୁହେଁ; ତାହା କେବଳ ସମଗ୍ର-କାବ୍ୟବସ୍ତୁର ଏକ ଅଂଶ ମାତ୍ର । ମାତ୍ର ତାହାର ବିଷୟଗତ ଆଂଶିକତା ହିଁ ଗଭୀର ସମାଜବୋଧ ସୃଷ୍ଟି କରିଅଛି । ମାନବ ସମାଜର ପ୍ରେମଚିତ୍ରଣ କରିବାରେ ଗଙ୍ଗାଧରଙ୍କ ଦୃଷ୍ଟିକୋଣ ସୁଦୂରପ୍ରସାରୀ; ତାହା ମୂଳରୁ ଆଦର୍ଶ ପ୍ରଯୋଜିତ । ସେଥିପାଇଁ ନିଷ୍ଠୁରତା ସତ୍ତ୍ୱେ ରାମଚନ୍ଦ୍ର ଆଦର୍ଶ ପ୍ରେମିକ; ଅଭିଯୋଗ ସତ୍ତ୍ୱେ ଦୁଷ୍ମନ୍ତ କର୍ତ୍ତବ୍ୟପରାୟଣ ପ୍ରେମିକ; ସୀତା କାରୁଣ୍ୟ ମଧ୍ୟରେ ଆଦର୍ଶରୂପିଣୀ; ଶକୁନ୍ତଳା ନିଷ୍ଠୟ ପ୍ରେମଜଗତରେ ରାଣୀ ଓ ନବାତ୍ସଲ୍ୟର ଅଧିଷ୍ଠାତ୍ରୀ ଦେବୀ ।

'ପଦ୍ମିନୀ'ର ବର୍ଣ୍ଣିତ ନାରୀ-ଆଦର୍ଶ ଭାରତ-ଇତିହାସର ଅମୂଲ୍ୟ ସମ୍ପଦ । ଅର୍ଘ୍ୟଥାଳି, ଉତ୍କଳଲକ୍ଷ୍ମୀ ପ୍ରଭୃତି ରଚନାରେ କବି ମଧ୍ୟ ସ୍ୱକୀୟ ପ୍ରେମର ସନ୍ଧାନରେ ବ୍ୟସ୍ତ । ପ୍ରକୃତିର ତରୁଲତା, ଫଳପୁଷ୍ପ, ଜୀବଜନ୍ତୁ

ସେହି ଦିବ୍ୟପ୍ରେମରେ କମ ପ୍ରଭାବିତ ନୁହନ୍ତି! ଗଭୀର ଆଧ୍ୟାତ୍ମିକତା ତାଙ୍କର କବିତାମାନଙ୍କରେ ପ୍ରତିଫଳିତ । 'ଭକ୍ତି' କବିତାଟି କ'ଣ ମାନବ ସମାଜରେ ନିଛକ ଆଦର୍ଶପ୍ରେମର ଉଦ୍ରେକ କରେ ନାହିଁ କି ? ସେଥିପାଇଁ 'ଅର୍ଘ୍ୟଥାଳୀ' ପୁସ୍ତକର ଅମୃତମୟ, ମଧୁମୟ ପ୍ରଭୃତି କବିତା ଦୁଇଟି କବିଙ୍କ ସମ୍ମୁଖରେ ଏକ ଆଦର୍ଶ ବିଶ୍ୱର ରୂପ ଉପସ୍ଥାପିତ କରିଥାଏ । ସତେ ଯେପରି ସୀତା, ଶକୁନ୍ତଳାଙ୍କ ଜୀବନର ସୃଷ୍ଟାଂଶ ଏହି କବିତାମାନଙ୍କରେ ପ୍ରତିଧ୍ୱନିତ ।

ବିଶ୍ୱ ଦେଖି ମଧୁମୟରେ ଜୀବନ
ବିଶ୍ୱ ଦେଖି ମଧୁମୟ
ମଧୁର ସ୍ମରଣି କରିବ ହରଣ
ତୋ ପାପ ମରଣ ଭୟରେ ଜୀବନ ।
(ମଧୁମୟ)

ମାନବ ସମାଜରେ ପ୍ରେମର ଅପର ନାମ ଧର୍ମ । ତେଣୁ କବି ସମସାମୟିକ କଳୁଷିତ ଶାସକଗୋଷ୍ଠୀଙ୍କ ବିରୋଧରେ ପ୍ରେମର ବାର୍ତ୍ତା ପରୋକ୍ଷରେ ଶୁଣାଇଛନ୍ତି ।

ମନ ଯା'ର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯା'ର ବିଦଳିତ ଗଣିକା ଚରଣେ ।
ଜୀବନ ଯା' ଲକ୍ଷ ଲକ୍ଷ ଲୋକଙ୍କର ଭାର
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମଅବତାର ।

ଗଙ୍ଗାଧରଙ୍କ କାବ୍ୟସୃଷ୍ଟିର ସମସ୍ତ ନାୟିକାନାୟକ ଏହି ଧର୍ମଭାବ ଦ୍ୱାରା ଜାଗରିତ । ସୀତା ସର୍ବଂସହା, ଶକୁନ୍ତଳା ମଧ୍ୟ ସର୍ବଂସହା । ସେମାନେ ପ୍ରତ୍ୟେକେ ଜୀବନର ତିକ୍ତତା, ରିକ୍ତତା, ଅଭିଶାପ, ଦୁଃଖବେଦନା ଜନିତ ନିଜର ଅତୁଚ୍ଛ ତ୍ୟାଗ ନିମନ୍ତେ ପୁରସ୍କାର ପାଇଛନ୍ତି ।

ତେଣୁ ଗଙ୍ଗାଧରଙ୍କ ପରିକଳ୍ପିତ ଚରିତ୍ରମାଳା ସ୍ୱର୍ଗର; ସେମାନେ ମର୍ତ୍ତ୍ୟର ନୁହନ୍ତି । ସେମାନେ ନିର୍ଯ୍ୟାତନା, ଦାରୁଣ ଅଭିଶାପର ଜ୍ୱାଳା ସହ୍ୟ କରିଥିଲେ । କିନ୍ତୁ ସେମାନଙ୍କର ଏହି ଅପୂର୍ବ ତ୍ୟାଗ କଦାପି ବ୍ୟର୍ଥତାରେ ପର୍ଯ୍ୟବେଶିତ ହୋଇ ନ ଥିଲା । ସେମାନେ ଅପାତତଃ ବ୍ୟର୍ଥତାର ଅନ୍ତରାଳରେ ଯୁଗ ଯୁଗ ପାଇଁ ବିଶ୍ୱ ନରନାରୀଙ୍କ ସମ୍ମୁଖରେ ମହାନ୍ ଆଦର୍ଶ ରଖିଯାଇଛନ୍ତି । ସେମାନେ ମୁଖ୍ୟତଃ ନାରୀ । ନାରୀ ଯୁଗେ ଯୁଗେ ଏପରି ଦଗ୍ଧ ସଳିତା ସମ ଆତ୍ମୋତ୍ସର୍ଗ ମହିମାରେ ବିଦଗ୍ଧ ହୋଇଛି ଏବଂ ତ୍ୟାଗର ସେହି ମହାନ୍ ପ୍ରଦୀପ୍ତିରେ ନାରୀ ନିଃଶେଷ ହୋଇଯାଇଛି । ପ୍ରେମର ପ୍ରଭାବରେ ପୁରୁଷ ନାରୀର ଅଧୀନତା ସ୍ୱୀକାର କରିଛି । ରୂପଜ ପ୍ରେମର ପ୍ରବାହରେ ପ୍ରଥମେ ପ୍ରଥମେ ସଂମୟେ ଓତଃପ୍ରୋତ ଭାବରେ ଜଡ଼ିତ, ମାତ୍ର ସ୍ତ୍ରୀ-ଚରିତ୍ରରେ ପ୍ରକାଶ ପାଇଛି ସଂଯତ ପ୍ରେମ; କିନ୍ତୁ ଦୁଷ୍ମନ୍ତଙ୍କ ପରି ଚରିତ୍ରରେ ପ୍ରକାଶ ପାଇଛି ଦୁର୍ବାର କାମନା ।

ଗଙ୍ଗାଧର ନରନାରୀ ମଧ୍ୟରେ ଆଦର୍ଶ ପ୍ରେମ ବିଶ୍ଳେଷଣ କରି ସାମାଜିକ ମୂଲ୍ୟବୋଧକୁ ପ୍ରଶ୍ରୟ ଦେଇଛନ୍ତି । ତାଙ୍କର ସମସ୍ତ କବିତା ସେପରି ନାରୀଚରିତ୍ର ମହିମା ଦ୍ୱାରା ବିଭୂଷିତ । ସମସାମୟିକ କବି ନନ୍ଦକିଶୋରଙ୍କ "ଶର୍ମିଷ୍ଠା" କାବ୍ୟର ପ୍ରତିଧ୍ୱନି ହିଁ ଗଙ୍ଗାଧରଙ୍କ ଚରିତ୍ର-ମାନଙ୍କରେ ବିଶ୍ରୁତ ହୋଇଥାଏ । "ପ୍ରେମ ପାଇଁ ପ୍ରେମ" ଗଙ୍ଗାଧରଙ୍କ କାବ୍ୟ-କବିତାର ଉପଜୀବ୍ୟ ନୁହେଁ, ବରଂ ମାନବିକ ମୂଲ୍ୟବୋଧ; ସାମାଜିକ ମୂଲ୍ୟବୋଧ । ସମଗ୍ର ଜୀବନର ଆଦର୍ଶବୋଧ ହିଁ ସେ ପ୍ରେମର ଆନୁଷଙ୍ଗିକ ମନ୍ତ୍ର ।

ରାଧାନାଥଙ୍କର ଉଷା, ଗୌରୀ, ନନ୍ଦିକା, ଚନ୍ଦ୍ରଭାଗା ଯେଉଁ ଯେଉଁ ବ୍ୟତିକ୍ରମ ପୀଡ଼ିତ, ଗଙ୍ଗାଧରଙ୍କର କାବ୍ୟ-ମାନସପ୍ରସୂତ ସୀତା ଓ

ଶକୁନ୍ତଳା ମଧ୍ୟ ସେହି ସେହି ଦିବ୍ୟଗୁଣରେ ମାନବ ସମାଜରେ ପ୍ରତି ଯୁଗରେ ସମ୍ମାନିତା ତଥା ସମ୍ବର୍ଦ୍ଧିତା । ଗଙ୍ଗାଧରଙ୍କ କାବ୍ୟବର୍ଣ୍ଣିତ ପୁରୁଷ ଏବଂ ନାରୀ ଦୈହିକ ବନ୍ଧନରେ ପ୍ରଥମେ ପ୍ରଥମେ ବନ୍ଦୀ ହୋଇଥିଲେ ହେଁ, ପରିଣାମରେ ସେମାନେ ସ୍ୱର୍ଗୀୟ ପ୍ରେମର କଠୋର ପରୀକ୍ଷା ଦେଇ-ଥିଲେ । ତେଣୁ ଗଙ୍ଗାଧରଙ୍କ କବିଦୃଷ୍ଟି ଆଦର୍ଶ ସଂଶ୍ଳିଷ୍ଟ । ତେଣୁ ନିର୍ମଳ ପ୍ରେମର ଜୟଗାନ ହିଁ ତାଙ୍କ କାବ୍ୟର ପ୍ରଧାନ ବାର୍ତ୍ତା । ଗଙ୍ଗାଧର ଜଣେ ଆଦର୍ଶବାଦୀ ବିଦଗ୍ଧ ସ୍ରଷ୍ଟା । ତାଙ୍କ କଳ୍ପିତ ନାୟିକା ତେଣୁ—

"କାର୍ଯ୍ୟେଷୁ ମନ୍ତ୍ରୀ କରଣେଷୁ ଦାସୀ<br>
ଧର୍ମେଷୁ ପତ୍ନୀ କ୍ଷମୟା ଧରିତ୍ରୀ<br>
ସ୍ନେହେଷୁ ମାତା ଶୟନେଷୁ ବେଶ୍ୟା<br>
ରଙ୍ଗେ ସଖୀ ଲକ୍ଷ୍ମଣ ! ସା ପ୍ରିୟା ମେ ।"

ଉତ୍କଳର ସାମାଜିକ ଜୀବନରେ ନାରୀ ତାର ଧର୍ମ, ନୀତି ଓ ଜ୍ଞାନ-ପଥରୁ ବିଚ୍ୟୁତ ହୋଇ ନ ପାରେ । ମେହେର କବି ପୌରାଣିକ ସ୍ତରରେ ଏହା ହିଁ ପ୍ରମାଣ କରିଛନ୍ତି । ଶେଷରେ "ଅହଲ୍ୟା-ଦ୍ରୌପଦୀ-ତାରା-କୁନ୍ତୀ-ମନ୍ଦୋଦରୀ" ପଞ୍ଚନାରୀଙ୍କର ଛାୟା ହିଁ ଗଙ୍ଗାଧରଙ୍କ କାବ୍ୟ-ମାନସୀର ସୃଷ୍ଟି ଆମ୍ଭାରେ ପ୍ରତିଫଳିତ ।

ରାଧାନାଥଙ୍କର ନାୟିକାଗଣ ଯେତେବେଳେ କୌଣସି ସ୍ଥିର ଆଦର୍ଶର ସଂକେତ ଦେଇ ନାହାନ୍ତି, ପୁନଶ୍ଚ ପ୍ରତ୍ୟେକେ ନିୟତି ହାତରେ ପୁତ୍ତଳିକାବତ୍ ନିର୍ଯ୍ୟାତନା ଓ କାରୁଣ୍ୟର ସମ୍ମୁଖୀନ ହୋଇଛନ୍ତି; ଗଙ୍ଗାଧରଙ୍କର ବର୍ଣ୍ଣିତ ପୁରୁଷ ଏବଂ ନାରୀଚରିତ୍ର ସେମାନଙ୍କ ଜୀବନର ପ୍ରାଣସ୍ଫୁର୍ତ୍ତି ନିର୍ମଳ ପ୍ରେମ ବଦଳରେ ସମାଜ ସମ୍ମୁଖରେ ଏକ ସୃଷ୍ଟି

ସଂକେତ-ପାଠ ଜାଣି ଯାଇଛନ୍ତି । ସେଥିପାଇଁ ଆଦର୍ଶ ପ୍ରେମଯଜ୍ଞରେ ପ୍ରତ୍ୟେକଙ୍କୁ କେତେ ଯେ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି, ତାହା ବୋଲିବା ବାହୁଲ୍ୟ ମାତ୍ର । ପ୍ରେମ ସେମାନଙ୍କ ଜୀବନର ମୁଖ୍ୟ ନୁହେଁ, ଗୌଣମାତ୍ର । ମାତ୍ର ପ୍ରେମ ମାଧ୍ୟମରେ ବଳିଷ୍ଠ ସାମାଜିକ ଉଚ୍ଚ ମାନବିକ ସଂପର୍କ ପ୍ରତିଷ୍ଠା ହିଁ ସେମାନଙ୍କର ଆଭିମୁଖ୍ୟ ।

—:o:—

# ଉତ୍କଳର ବନପର୍ବତ
# ଓ
# ଶଶିଭୂଷଣ

ଧନ-ଦରିଦ୍ର ଦେଶରେ ଆଜୀବନ ଅଖଣ୍ଡ ସାହିତ୍ୟ ସେବା ଓ ସାଧନା ଦ୍ୱାରା ଜୀବନଯାପନ ଓ ନିୟୋଗ କରିବା ଏକ କଠୋର ସମସ୍ୟା । ଭାରତୀୟ ଅନ୍ୟାନ୍ୟ ଉପାନ୍ତ ସାହିତ୍ୟରେ ଯେତେବେଳେ ସାହିତ୍ୟିକ ଓ କବିମାନେ ସର୍ବସାଧାରଣ ସମ୍ପଦ ରୂପେ ପରିଗଣିତ ଏବଂ ପ୍ରୋତ୍ସାହିତ, ସେତେବେଳେ ଓଡ଼ିଶାରେ ଓଡ଼ିଆ ଭାଷା ଓ ସାହିତ୍ୟର ଜୀବନଧାରାକୁ କେବଳ ସଂଜୀବିତ କରି ରଖିବାରେ ହିଁ ଓଡ଼ିଆ ସାହିତ୍ୟିକକୁ ଆଜୀବନ ପ୍ରାଣପାତ କରିବାକୁ ହୋଇଥାଏ । ଊନବିଂଶ ଶତାବ୍ଦୀର ଶେଷପାଦରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ପ୍ରତ୍ୟେକ ଓଡ଼ିଆ ସାହିତ୍ୟିକ ନିଜ ମାତୃଭାଷା ଓ ସାହିତ୍ୟିକ ମେରୁଦଣ୍ଡ ସଜାଡ଼ିବାରେ ବ୍ୟସ୍ତ । ଯେବେ ଓଡ଼ିଆସାହିତ୍ୟରେ କେହି ଆଜୀବନ ନିଷ୍ଠାପର ସାହିତ୍ୟସେବାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଓ ପ୍ରତିଷ୍ଠା ସ୍ଥାପନ କରି ଯାଇଥାନ୍ତି, ତାହାହେଲେ ସେ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ଯୁଗାନ୍ତକାରୀ କାବ୍ୟ-ଗୁରୁ କବିବର ରାଧାନାଥଙ୍କର ଯୋଗ୍ୟପୁତ୍ର ଶଶିଭୂଷଣ । ବିଂଶ ଶତାବ୍ଦୀର ଆଦ୍ୟାବସ୍ଥାରେ କବିବର ରାଧାନାଥଙ୍କର ତିରୋଧାନ ହୁଏ ।

ଯୋଗ୍ୟପିତାର ଯୋଗ୍ୟପୁତ୍ର ସଦୃଶ ଶଶିଭୂଷଣ ଉତ୍କଳ ବାଣୀମନ୍ଦିରରେ ଏକାନ୍ତଭାବରେ ସାଧନା ଆରମ୍ଭ କରନ୍ତି । ଯେଉଁବେଳେ ଫକୀରମୋହନ, ରାଧାନାଥ, ଭକ୍ତକବି ମଧୁସୂଦନଙ୍କ ସାରସ୍ୱତ ସମ୍ପଦ ଉତ୍କଳର ବାଣୀମନ୍ଦିରକୁ ପ୍ରାଚୁର୍ଯ୍ୟବନ୍ତରେ କରି ସାରିଥିଲା, ଉତ୍କଳର ଜାତୀୟ ଜୀବନରେ ନବଜୀବନର ଆଲୋକପାତ ହୋଇ ସାରିଥିଲା, ସାହିତ୍ୟ ଓ ସଂସ୍କୃତିରେ ପ୍ରତିକ୍ରିୟା ପ୍ରଦର୍ଶିତ ହେଉଥିଲା, ଠିକ୍ ସେତିକିବେଳେ ସାହିତ୍ୟକ୍ଷେତ୍ରରେ ଲେଖନୀ ଧାରଣ ପୂର୍ବକ ଖ୍ୟାତି ଓ ସୁନାମ ଅର୍ଜ୍ଜନ କରିବା, ମୌଳିକ ସୃଷ୍ଟିଦ୍ୱାରା ସାହିତ୍ୟ-କ୍ଷେତ୍ରକୁ ସୁଷମ ଓ ସମୃଦ୍ଧ କରିବା ଅତୀବ ଦୁରୂହ ବ୍ୟାପାର । ସର୍ବୋପରି ପ୍ରତିଭା ଓ ନାନ୍ଦନିକ ଦର୍ଶିତା ଅଭାବରେ ଏତାଦୃଶ ଦୁର୍ଗମ ପଥରେ ଭ୍ରମଣ କେବଳ ଆତ୍ମବିଡ଼ମ୍ବନା ସିନା ! ଯେଉଁ ମହୀୟସୀ ପ୍ରତିଭା ସଙ୍କେତରେ ଶଶିଭୂଷଣଙ୍କର ଅମର ଲେଖନୀ ଦିନେ ଉତ୍କଳର ରୂପଚପଳ ବନପ୍ରକୃତିକୁ କୁହୁକ ସ୍ପର୍ଶରେ ରସାଣିତ କରିଥିଲା, ଯେଉଁ ସାଧନାର ତାଡ଼ନାରେ କବିବରଙ୍କ କବିତ୍ୱ ଦିବ୍ୟମୂର୍ତ୍ତି ଧାରଣ କରିଥିଲା, ସେହି ପ୍ରତିଭା ଓ ସାଧନାର ଆହ୍ୱାନ ଆଜି ପ୍ରତ୍ୟେକ ପାଠକକୁ ତନ୍ମୟ କରି ରଖେ । ଚିଲିକାକୂଳର ଯାତ୍ରୀ କବିବର ରାଧାନାଥ ତ ଓଜସ୍ୱିନୀ ଭାଷାରେ ପ୍ରାଣରେ ଆଲୋଚ୍ୟକୁ ରୂପ ଦେଇ ସାରିଥିଲେ—

"ଏତେ ଛବି ଯେଣୁ ଏକାଧାରେ ଠୁଳ,
ଛବିଳ ଉତ୍କଳେ ତୋ ଛବି ଅତୁଳ ।

× × ×

ଘରଣୀ ଭକତ କେଉଁ ରୂପପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧ୍ୟାୟୀ !"

ଉତ୍କଳର ବନ ପ୍ରକୃତି, ମହୋଦଧିର ନୀଳମ୍ବୁରାଶି, ମହେନ୍ଦ୍ର-ମେଘାସନ ପର୍ବତଶ୍ରେଣୀ- ଆଳସୀ ଘଳେଶ୍ୱୀ, ରମ୍ୟାଟବୀ ନଦନଦୀ,

ସର୍ବୋପରି ଉତ୍କଳର ପ୍ରତ୍ୟେକ ସୌନ୍ଦର୍ଯ୍ୟ ଗଭୀର ଭାବରେ କବିବରଙ୍କ ପ୍ରାଣକୁ ସ୍ପର୍ଶ କରିଥିଲା । ରାଧାନାଥଙ୍କ କାବ୍ୟରେ ପ୍ରାକୃତିକ ବିଭବ ମନୋଜ୍ଞ ଭାଷାରେ ଚିତ୍ରିତ ହୋଇଅଛି । ପ୍ରକୃତି ରୂପାଙ୍କନ, ସୌନ୍ଦର୍ଯ୍ୟ ଚିତ୍ରଣ, ରାଧାନାଥଙ୍କ କାବ୍ୟର ମୌଳିକ ମୁଦ୍ରାଙ୍କନ ବୋଲି ପରିଗଣିତ ହୋଇ ପାରିଥିଲା । ତେଣୁ ସେହି ପ୍ରକୃତି, ସେହି ନଦନଦୀ, ସେହି ମାଳଗିରି, ସେହି ମେଘାସନ, ସେହି ଚିଲିକା ଓ ବଡ଼କୂଳକୁ ପୁନର୍ବାର ସାହିତ୍ୟରେ ଜୀବନ୍ୟାସ ଦେବା ଏବଂ ବର୍ଣ୍ଣନା କ୍ଷେତ୍ରରେ ପୂର୍ବବର୍ତ୍ତୀ କବିଙ୍କଠାରୁ ମୌଳିକତା ରକ୍ଷା କରିବା ଚେଷ୍ଟା କି ଦୁଃସାହସ ! କବିବର ରାଧାନାଥ ଆତ୍ମସମ୍ପୂର୍ଣ୍ଣ ଭାବରେ ରୂପ ଓ ସୌନ୍ଦର୍ଯ୍ୟ ଅର୍ଚ୍ଚନା ସମ୍ପାଦନ କରି ପାରିଥିଲେ । ତେବେ ଶଶିଭୂଷଣଙ୍କର ନୂତନତ୍ୱ ଓ ମୌଳିକତା କେଉଁଠି ?

ମରାଳମାଳିନୀ ନୀଳାମ୍ବୁ ଚିଲିକାର ଅସୀମ ସୌନ୍ଦର୍ଯ୍ୟର ଦ୍ୱାର ରାଧାନାଥ ରୂପପିପାସୁମାନଙ୍କ ପାଇଁ ଉଦ୍‌ଘାଟନ କରି ସାରିଥିବା ସ୍ଥଳେ, ଶଶିଭୂଷଣଙ୍କ ବର୍ଣ୍ଣନାର ମୌଳିକତା ପାଇଁ କ୍ଷେତ୍ର କାହିଁ ? କେବଳ ତାହା ନୁହେଁ, ରାଧାନାଥ ସମଗ୍ର ବର୍ଣ୍ଣନାତ୍ମକ କାବ୍ୟସାହିତ୍ୟ ଆମୂଳଚୂଳ ପରିବର୍ତ୍ତନ କରି ଦେଇଥିଲେ । ସୌନ୍ଦର୍ଯ୍ୟର କି କଳ୍ପନା ଓ ପରାକାଷ୍ଠା ତାଙ୍କ ଲେଖନୀର ଅଭିବ୍ୟକ୍ତିରେ ସୁସ୍ପଷ୍ଟ ।

"ମଗଧେ ମୈଥିଲେ, ଅଙ୍ଗେ ବଙ୍ଗେ ପୁଣି
ଦେଖିଛୁ କେତେ ସୁନ୍ଦରୀ,
ଏ ଯୋଷା ଚରଣ— ଘଷା ପଥରକୁ
ନୋହିବେଟି କେହି ସରି !"

ତେବେ କଣ ଶଶିଭୂଷଣ କବିବରଙ୍କର କାବ୍ୟକବିତାର ପୁନରାବୃତ୍ତି ? ଅତି ସହଜରେ ଏହି ସନ୍ଦେହ ଓ ଆଶଙ୍କା ଖଣ୍ଡିତ ହୋଇ-

ପାରେ । ଶଶିଭୂଷଣ ଏକ ନବୀନ ମୌଳିକ ପ୍ରତିଭା; ଯେଉଁ ପ୍ରତିଭା ପ୍ରଦୀପ; ନିଜେ ଜଳି ଜଳି ଆଲୋକ ବିକୀରଣ କରିଅଛି । ରାଧାନାଥ କାବ୍ୟ-କବିତା ଓ ପଦ୍ୟ ଭିତ୍ତି ଉପରେ ଯେଉଁ ସାହିତ୍ୟ-ସୌଧ ନିର୍ମାଣ କରିଗଲେ, ଶଶିଭୂଷଣ ଭିନ୍ନ ପଥର ଯାତ୍ରୀ ହୋଇ ସେହି ଉତ୍ତୁଙ୍ଗ ଅନୁଷ୍ଠାନର ପ୍ରାଣଦାନ କରିଗଲେ । ରାଧାନାଥ ଥିଲେ କାବ୍ୟ ଓ କବିତାର ଉପାସକ । ମାତ୍ର ଶଶିଭୂଷଣ 'ଗଦ୍ୟ' କୁ ହିଁ ତାଙ୍କର ସାରସ୍ୱତ ସାଧକ ଜୀବନର ମାଧ୍ୟମ ରୂପେ ଗ୍ରହଣ କରିଥିଲେ । 'କାବ୍ୟ' ସାହାଯ୍ୟରେ କୃତିତ୍ୱ ପ୍ରତିଷ୍ଠା ଅପେକ୍ଷାକୃତ ସହଜ । ମାତ୍ର ନୀରସ ଶୁଷ୍କ ଗଦ୍ୟର ଆଶ୍ରୟରେ ସାହିତ୍ୟ କ୍ଷେତ୍ରରେ ଏକ ନୂତନ (ପ୍ରୟୋଗାତ୍ମକ) ପରୀକ୍ଷା ପ୍ରଚଳନ କରିବା ସହଜ ବ୍ୟାପାର ନୁହେଁ ! ଆଜି ଶଶିଭୂଷଣଙ୍କର ପ୍ରତିଷ୍ଠା ଓଡ଼ିଆ ଗଦ୍ୟସାହିତ୍ୟକାନନର ପିକବର ଭାବରେ । ତେଣୁ ବିଷୟବସ୍ତୁ ଏକ ହେଲେ ମଧ୍ୟ ଶୈଳୀ, ପ୍ରକାଶ ମାଧ୍ୟମ ଶଶିଭୂଷଣଙ୍କର ସମ୍ପୂର୍ଣ୍ଣ ନୂତନ । ରାଧାନାଥଙ୍କର ସମଗ୍ର ଚିଲିକା କାବ୍ୟପାଠଲବ୍ଧ ଆନନ୍ଦ-ଅନୁଭୂତି ମଧ୍ୟ ଶଶିଭୂଷଣଙ୍କର ଉତ୍କଳ-ପ୍ରକୃତି ଅନ୍ତର୍ଗତ "ବଡ଼କୂଳ ଜ୍ୟୋତ୍ସ୍ନା ।" ପରିଚ୍ଛେଦରେ ନିହିତ ଅଛି । ଏହି ବର୍ଣ୍ଣନା ପରିଚ୍ଛେଦର ଗଦ୍ୟ ଲେଖକର ବର୍ଣ୍ଣନା ତଥା ପ୍ରକାଶ-ଚାତୁରୀ ପ୍ରଶଂସନୀୟ । ସେ ଲେଖିଛନ୍ତି ,"ନୀଳାମ୍ବୁ ଚିଲିକାର ପୂର୍ଣ୍ଣ ସୌନ୍ଦର୍ଯ୍ୟ ଉପଲବ୍ଧିର ସ୍ଥାନ ହିଁ ବଡ଼କୂଳ । × × ବଡ଼କୂଳ ବଙ୍ଗଳାରୁ ଚିଲିକାର ଦୃଶ୍ୟାବଳୀର ସମ୍ୟକ ବର୍ଣ୍ଣନା ମୋହର ସାମାନ୍ୟ ଲେଖନୀର ସାଧ୍ୟାତୀତ । ଭୁଲୁକହାଡ଼ର ଜଟିଆ ସଂଲଗ୍ନ ଭାଲେରୀ ପର୍ବତର ଦୁର୍ଦ୍ଧର୍ଷ ନୀଳପ୍ରାଚୀର ପ୍ରକାଣ୍ଡ ଦୈର୍ଘ୍ୟପ୍ରାପ୍ତ ସମ୍ପ୍ରସାରିତ ଦୂରରେ ବାଣପୁରମାଳର ଶୈଳଶ୍ରେଣୀରୁ ଘଣ୍ଟଶିଳା ପାହାଡ଼ ସୁସ୍ପଷ୍ଟ ଦିଶୁଅଛି । ଏହାର ପଶ୍ଚାତରେ ଧୂମ୍ରସର ନୀଳର ପର୍ବତମାଳା ମଧ୍ୟରୁ ଖଣ୍ଡାହଣା ପର୍ବତର 'କରମୁଣ୍ଡାକୃତି' ନୟନ ସମକ୍ଷରେ ପ୍ରତିଭାତ । ସୋଲରୀ ପର୍ବତ ବିଶାଳକାନ୍ତି ଏବଂ ରଣପୁର ରାଜ୍ୟର ଧାନୋଇ,

ମୈନାକ ଏବଂ ଗଉଡ଼ିଣିଆ ପ୍ରଭୃତି ଏକତ୍ର ମିଶିଯାଇ ହରିତ୍ ଏବଂ ନୀଳବର୍ଣ୍ଣ ରେଖାର ବର୍ଣ୍ଣ ସମଷ୍ଟିରେ ଗଗନ ମୁଦ୍ରିତ କରିଅଛି । ଚିଲିକାକୂଳସ୍ଥ ତାରାଦେବୀଙ୍କ ଦାଣ୍ଡିଆ ଶୈଳଟି ତ୍ରିକୁଟିଦେବୀଙ୍କ ତ୍ରିକାଣ୍ଡ ହସ୍ତୀ ପ୍ରାୟ ଚିଲିକା ଜଳ ଆଡ଼କୁ ଉନ୍ମୁଖି ଚଢ଼ିଅଛି । ମାମୁ-ଭଣଜା ପ୍ରଭୃତି ଗଣ୍ଡ ଶୈଳଶ୍ରେଣୀ ଦୂରତ୍ୱର ସଙ୍କୀର୍ତ୍ତିତ । ବଙ୍ଗଳା ତଳେ ବିଶ୍ୱଲକ୍ଷ୍ମୀଙ୍କ ବିଶାଳ ଦର୍ପଣରୂପ ଚିଲିକାର ନୀଳଜଳରାଶି ମଧ୍ୟରୁ ଚଢ଼େଇଗୁହା ଶୈଳ ନୀଳ-ସରୋବରରେ କମଳ ଭାସିଲା ପ୍ରାୟ ଦିଶୁଅଛି । ଦୂରରେ କାଳିଜାଈ ଦେବୀଙ୍କ ମନ୍ଦିର ସୂର୍ଯ୍ୟକିରଣରେ ଝକଝକ କରୁଅଛି । ଉତ୍କଳର ବନ, ପର୍ବତ, ନଦନଦୀ, ହ୍ରଦ-ସାଗର, ରାଜ-ରାଜଧାନୀ, ଦୁର୍ଗମନ୍ଦିର, ଶିବିର ଏବଂ ସମରପ୍ରାଙ୍ଗଣ ପ୍ରତି ରୂପପିପାସୁ କବିବର ରାଧାନାଥ, କବିଶେଖର ଚିନ୍ତାମଣି, ସ୍ୱଭାବକବି ଗଙ୍ଗାଧର, ଭକ୍ତକବି ମଧୁସୂଦନ ପ୍ରଭୃତିଙ୍କର ଦୃଷ୍ଟି, ସହାନୁଭୂତି ଏବଂ ସମବେଦନା ଯେପରି କଳ୍ପନାରଞ୍ଜିତ, ଶଶି-ଭୂଷଣଙ୍କର ଦୃଷ୍ଟି ଓ ସମବେଦନା ସେହିପରି କେବଳ କଳ୍ପନାରଞ୍ଜିତ ନୁହେଁ । ଶଶିଭୂଷଣଙ୍କର କାବ୍ୟ ଓ କଳ୍ପନା ରାଜ୍ୟର ବନପ୍ରକୃତି କଳ୍ପନା ରସରେ ରସାଣିତ ଓ ବାସ୍ତବତା ଜ୍ଞାନରେ ପ୍ରତ୍ୟକ୍ଷୀଭୂତ । ଶଶିଭୂଷଣଙ୍କର ଉତ୍କଳଚିତ୍ରାବଳୀ କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟର ହିସାବ ନିକାଶ ନୁହେଁ, ବରଂ ଓଡ଼ିଶାର କରୁଣ ପଲ୍ଲୀଚିତ୍ର । ତାହାର ସୁଖଦୁଃଖ, ତାହାର ଚଳଚଞ୍ଚଳ, ତାହାର କ୍ଷୁଦ୍ର ଡାଇକରା ଓ ଗୋଡ଼ିବାଣ ଫୁଲ, ତାହାର ନୀଳଘାସ ଓ ଶାଳଗଛ ପ୍ରତ୍ୟେକଟି ସେହି ଶଶିଭୂଷଣଙ୍କର ଅମର ଲେଖନୀରେ ଚିର ଜାଗ୍ରତ ହୋଇଅଛି । ତାଙ୍କର ବସନ୍ତ ଅଭି-ବ୍ୟକ୍ତି କି ପୁଲକପୂର୍ଣ୍ଣ !

ବସନ୍ତର ରୂପରେଖରଙ୍ଗର ଡାଲି ପୃଥିବୀ ଉପରେ ଓଜାଡ଼ି ହୋଇ ପଡ଼ିଗଲା । ଗୋଖରା କଣ୍ଟକିତ ସ୍ଥାନସମୂହ ଘାସର ହରିତ୍ ସ୍ରୋତ ଲୁଚାଇ ଦେଇ ନିଜର ଜୟପତାକା ଉଡ଼ାଇ ଦେଲା । କେତେ ଅଜାଣିତ ଫୁଲର

ହାସ୍ୟରେ ବସନ୍ତଦେବର ଅଭିନନ୍ଦନ ଲିପି ପ୍ରଗୃହିତ ହେଉଥିଲା, ତାହା ଠିକ୍ କରିବା ଅସମ୍ଭବ ।

× × ×

ଉଇଅଁ ଗଛସମୂହ ତାମ୍ରାଭ ଓ ଗୀତ ବହୁଳ ହରିତ୍ପତ୍ରରେ ଶୋଭିତ ହୋଇ ଭୃମ୍ଭର ଶୁଭାଗମନର ସୂଚନା କରୁଅଛି ।

× × ×

ଭୃମ୍ଭର ଶୁଭାଗମନ ପ୍ରାରମ୍ଭରୁ କୁହୁଡ଼ି ସଞ୍ଜାତ ହୋଇ ଆମ୍ର-ମୁକୁଳ ନିର୍ଗତ ହୁଏ ।

× × ×

ମାଳ୍ୟଗିରିରେ ପ୍ରଭାତ, ଗୃନ୍ଧପୁରରେ ସାୟାହ୍ନ, ନିଭୃତ ନିଳପୁରେ ଶ୍ରାବଣ ସନ୍ଧ୍ୟା, କୈଳାସରେ ଅନ୍ଧକାର, ମୂହୂର୍ଙ୍ଗାରେ ସନ୍ଧ୍ୟା, ସ୍ୱର୍ଗପୁରିରେ ସନ୍ଧ୍ୟା, ସାତକୋଶିଆରେ ଅନ୍ଧକାର, କପିଳାସରେ ପ୍ରଭାତ କେବଳ କବି ଶଶିଭୂଷଣଙ୍କର ସୂକ୍ଷ୍ମ ଅନୁଭୂତି ଓ ବର୍ଣ୍ଣନାଶକ୍ତିର ପରିଚୟ ଦେଉ ନାହିଁ; ଓଡ଼ିଶା ପ୍ରତି ଶଶିଭୂଷଣଙ୍କର କିପରି ଗଭୀର ମମତା ଥିଲା, ତାହା ହିଁ ପ୍ରକାଶ କରୁଅଛି ।

ଉତ୍କଳ ବନପର୍ବତରେ ଶଶିଭୂଷଣ ଯେପରି ପଲ୍ଲୀ ଗୋପାଳ ବାଳକତୁଲ୍ୟ ନିତ୍ୟ ମୁରଲୀବାଦନରେ ବ୍ୟସ୍ତ । ବନ-ପର୍ବତର ପ୍ରତ୍ୟେକ ତୃଣଲତା ଯେପରି ଉତ୍କର୍ଣ୍ଣ ହୋଇ ତାହା ଶୁଣୁଛନ୍ତି । ଶଶିଭୂଷଣ ଚିର-ବନ୍ଦନ ଓଡ଼ିଶା ଭୂମିରେ, ଦାକ୍ଷିଣାତ୍ୟରେ, ଆର୍ଯ୍ୟାବର୍ତ୍ତରେ ସୌଜନ୍ୟ-ଯାତ୍ରୀ । ସେ ଗତିର ସୀମା ନାହିଁ ।

ଭାଷାରେ କି ଶକ୍ତି ନିହିତ, ଯୋଜନାରେ କି ବ୍ୟକ୍ତିଗତ ସ୍ପର୍ଶ ଜଡ଼ିତ !

ଯଥାର୍ଥରେ ନିଭୃତନିଳୟ ତାଙ୍କର କବି ଜୀବନର ଏକାନ୍ତ ରୁଚି-ବୋଧକ । କୌଣସି ଏକ କ୍ଷୁଦ୍ର ସ୍ଥାନରେ କାବ୍ୟ ଉପଯୋଗିତା ସଞ୍ଚାର କରି ତାକୁ ଋଷି-ଆଶ୍ରମତୁଲ୍ୟ ପବିତ୍ର କରିବା କେବଳ ଶଶିଭୂଷଣଙ୍କ ପରି ନିଷ୍ଠାପର, ନିରବଚ୍ଛିନ୍ନ, ଏକାନ୍ତ ସାହିତ୍ୟିକଙ୍କ ପକ୍ଷରେ ସମ୍ଭବ । ଚିରଦିନ ସେ ଯେପରି ଉଦାସୀନ ହୋଇ ଦିନ ଅତିବାହିତ କରିଛନ୍ତି, ଅଥଚ ସେ ବସନ୍ତ-କୋକିଳ ତୁଲ୍ୟ ସଙ୍ଗୀତମୁଖର ।

ଉତ୍କଳର ସବୁଜ ବନାନୀ ପ୍ରକୃତିର ପ୍ରକୃତ ଗ୍ରାହକ ପ୍ରାବନ୍ଧିକ ଶଶିଭୂଷଣ (୧୮୭୬-୧୯୫୩) ଆଜି ପରଲୋକରେ, ତଥାପି ଲକ୍ଷ ଲକ୍ଷ ପାଠକ ତାଙ୍କୁ ଯୁଗେ ଯୁଗେ ସ୍ମରଣ କରୁଥିବେ । 'ଉତ୍କଳ ପ୍ରକୃତି', 'ଉତ୍କଳର ଋତୁଚିତ୍ର', 'ଦାକ୍ଷିଣାତ୍ୟ ଭ୍ରମଣ', ପ୍ରଭୃତି ତାଙ୍କର ଉଲ୍ଲେଖ-ଯୋଗ୍ୟ କୃତି

—*—

# ଓଡ଼ିଆ

# ସାହିତ୍ୟରେ

# ଶରତ୍‌ଋତୁର ବର୍ଣ୍ଣନା

ପ୍ରତି ଯୁଗରେ ଏବଂ ପ୍ରତି ସାହିତ୍ୟରେ ପ୍ରକୃତି ପ୍ରତି କବିମାନଙ୍କର ଗଭୀର ଆକର୍ଷଣ ପ୍ରକାଶ ପାଇଥାଏ । ରୂପପାୟୀ କବିର ଏହି ପ୍ରକୃତି ସୌନ୍ଦର୍ଯ୍ୟ ପିପାସା ଚିରନ୍ତନ ଏବଂ ଏହି ପିପାସାର ତୃପ୍ତି ନାହିଁ । "ସୁନ୍ଦର ତୃପ୍ତିର ଅବସାଦ ନାହିଁ; ଯେତେ ଦେଖୁଥିଲେ ନୂଆ-ଦିଶୁଥାଇ" ବୋଲି କବି ପ୍ରାଣରେ ମୂର୍ଚ୍ଛନା ତରଙ୍ଗାୟିତ ହୋଇଥିଲା । ପ୍ରକୃତିର କର୍ମ ପ୍ରବାହରୁ ଏବଂ ସୌନ୍ଦର୍ଯ୍ୟ ସମୁଦ୍ରରୁ କଳାବିତ୍ କେବଳ ରତ୍ନ ଆହରଣ କରନ୍ତି ସିନା, କବିମାନେ ପ୍ରକୃତିର ଇନ୍ଦ୍ରିୟଗ୍ରାହ୍ୟ ରୂପକୁ ତାଙ୍କର ଇନ୍ଦ୍ରିୟଦ୍ୱାରା ଅନୁଭବ କରନ୍ତି । ରୂପ- ପିପାସୀର-ପ୍ରାଣ ସୃଷ୍ଟିର ରୂପରସବର୍ଣ୍ଣଗନ୍ଧରେ ମୁଗ୍‌ଧ ହୁଏ । ଏହି ପ୍ରକୃତି ପୁଣି ଋତୁ-ଚକ୍ରର ଆବର୍ତ୍ତନ କ୍ରମେ ଭିନ୍ନ ଭିନ୍ନ ରୂପ ଧାରଣ କରେ । ବୈଶାଖୀର ଝଡ଼ଝଞ୍ଜା ତଳେ, ଆତପ ବିଦଗ୍‌ଧ ଶୁଷ୍କ ପଲ୍ଲବ ତଳେ, କିବା ମାଳ ଭ୍ରମରକାନ୍ତ ମରୀଚିକା ଶ୍ରୁତ୍ମାରେ ଏହି ପ୍ରକୃତି ଯେପରି କ୍ଳାନ୍ତ ଓ ତପୋକ୍ଳିଷ୍ଟ । ଶ୍ୟାମ ଜଳଧର ଡମ୍ବରୁ ଉଦ୍‌ଘୋଷିତ ଆଷାଢ଼ର ପ୍ରଥମ ଦିବସରେ ଉତ୍‌ଫୁଲ୍ଲ କଦମ୍ବର ରଙ୍ଗରେ ଏହି ପ୍ରକୃତି ସ୍ନିଗ୍‌ଧ ଏବଂ ସୁନ୍ଦର । ଅଗସ୍ତି ପ୍ରଜ୍ୱଳିତ ନୀଳାକାଶ କିବା କାଶତଣ୍ଡୀ ଉଚ୍ଛ୍ୱଫୁଲ୍ଲ ତଟିନୀ

ଓ ଶ୍ୟାମଶସ୍ୟ ପ୍ରାଚୁର୍ଯ୍ୟରେ ଶାରଦୀୟ ପ୍ରକୃତି; ସର୍ବୋପରି ମନ୍ମଥ-ଫୁଲବାଣ ହୃଷ୍ଟ ମଳୟ ବିହ୍ୱଳ ବସନ୍ତର ମୃଦୁ ମଧୁ ଭାଷାରେ ପ୍ରକୃତି ଯେଉଁ ନବ ନବ ରୂପ ଧାରଣ କରେ, ତାହା ଯଥାର୍ଥରେ ରୂପପିପାସାର ଅଶାନ୍ତ ସୀମା ମଧ୍ୟରେ କେବଳ ସୀମା ମାତ୍ର ।

ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ପ୍ରକୃତିର ଉଜ୍ଜ୍ୱଳ ବର୍ଣ୍ଣନା ବୈଚିତ୍ର୍ୟ ପରିଲକ୍ଷିତ ହୁଏ ।

ଭାରତୀୟ ସଂସ୍କୃତ ସାହିତ୍ୟରେ ଅମର କବି କାଳିଦାସଙ୍କର ଋତୁସଂହାର ପ୍ରକୃତି ସୌନ୍ଦର୍ଯ୍ୟ ବିଳାସ ଓ ବର୍ଣ୍ଣନମହୋତ୍ସବରେ ପରିପୂର୍ଣ୍ଣ । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରକୃତି ବର୍ଣ୍ଣନା ବିଭବରେ କେବଳ ସମୃଦ୍ଧ ନୁହେଁ, ବରଂ ମାନବର ବହିର୍ଜଗତ ପ୍ରକୃତି ଯେପରି ପ୍ରାଚୀନ ଓଡ଼ିଆ ସାହିତ୍ୟରେ ରସୋତ୍ତୀର୍ଣ୍ଣ ଭାବରେ ପ୍ରତିବିମ୍ବିତ ହୋଇ ପାରିଛି । ବିଭିନ୍ନ ଋତୁ ସମୟରେ ଉତ୍କଳର ଚପଳ ପ୍ରକୃତି ଯେଉଁ ଅନନ୍ୟ ରୂପଶ୍ରୀ ଧାରଣ କରେ, ତାହା ପ୍ରତି ଯୁଗର କବିର ଲେଖନୀକୁ କେବଳ ସ୍ପନ୍ଦିତ କରି ନାହିଁ, ବରଂ ରୂପର ପ୍ରାଚୁର୍ଯ୍ୟରେ କବି ମୁଗ୍ଧ ଶିଳ୍ପସୃଷ୍ଟିରେ ପ୍ରକୃତିର ଏକ ମହା ସ୍ତାବକ ରୂପରେ ପରିଣତ ହୋଇ ସାରିଛି ।

ପ୍ରାବୃଟର ଗୁରୁଗର୍ଜନ ବିଦ୍ୟୁତ୍ ସ୍ଫୁରଣ, ଗଭୀର ନିଶୀଥରେ ଝଡ଼ର ନୃତ୍ୟ, ଶ୍ରାବଣର ଅବିଶ୍ରାନ୍ତ ବର୍ଷଧାରା ନିଃଶେଷ ହୋଇ ଆସିଥାଏ ଶାନ୍ତ କାନ୍ତ ତପୋବନ ତପସ୍ୱିନୀ ପରି । ମେଘମୁକ୍ତ ଶାରଦୀୟ ଆକାଶ ତଳେ ପ୍ରକୃତି ସ୍ନାତ ବଦନରେ ପ୍ରଜ୍ୱଳିତ ଅଗସ୍ତିତାରକା ଅଂଜଳିରେ ଆତ୍ମପ୍ରକାଶ କରୁଥାଏ । ପ୍ରାବୃଟ ଋତି ସାଗର, ବିରହି-ବିରହିଣୀର ଭାବନା କେନ୍ଦ୍ରସ୍ଥଳ ବର୍ଷାଋତୁ ଆଉ ନାହିଁ । ବନକୁଞ୍ଜର ଶେଫାଳି ଚକ୍ରରେ କିବା ନୀଳାଭ ତମାଳର କରପଲ୍ଲବରେ ଏହି ଶାରଦୀୟ ପ୍ରକୃତି ଉତ୍କଳର ବାୟୁମଣ୍ଡଳରେ ପ୍ରତିଭାତ ହୁଏ । ପ୍ରାଚୀନ

ଓଡ଼ିଆ କବିମାନଙ୍କ କୃତୀରେ ଏହି ଶରତଋତୁ ଯେଉଁ ଉଚ୍ଚସ୍ଥାନ ଅଧିକାର କରିଅଛି, ତାହା କେବଳ ଶରତର ସ୍ୱଚ୍ଛତା, ପବିତ୍ରତା, ନିର୍ମଳ ସୌନ୍ଦର୍ଯ୍ୟ ନୁହେଁ; ବରଂ ଶରତଋତୁରେ ମଣିଷ ଜୀବନରେ ଯେଉଁ ଦିବ୍ୟ ପ୍ରେରଣାର ଆବିର୍ଭାବ, ତାହା ହିଁ ଅଧିକାଂଶ କବିଙ୍କ ରଚନାର ମୂଳଭିତ୍ତି ହୋଇଅଛି ।

ପ୍ରସିଦ୍ଧ କବି ଜଗନ୍ନାଥ ଦାସଙ୍କର ବର୍ଣ୍ଣନାରେ :—

...... ପ୍ରବେଶ ଶରଦର କାଳ
ଶୁକ୍ଳ ମେଘେ ଯେ ଶୂନ୍ୟେ ଦିଶି,
ନଥର ପବନ ପ୍ରକାଶି
ଭ୍ରଷ୍ଟ ଯୋଗିଙ୍କ ଚିତ୍ତ ଯେସନେ,
ପୁଣି ନିରଳ ଯୋଗଧ୍ୟାନେ ।
ଶବଦ ଭୟେ ମେଘ ଗର୍ଜ୍ଜି;
ଆକାଶ ନିର୍ମଳ ଦିଶିଲା ।
କୃଷକେ ମିଳି ଧାନଯେସନେ,
ଜଳ ବାନ୍ଧିଲେ ହୃଷ୍ଟ ଚିତ୍ତେ ।
ନିର୍ମଳ ଦିଶେ ଶୂନ୍ୟପଥ,
ଗ୍ରହ ନକ୍ଷତ୍ର ନିଶାନାଥ ।
ଶରଦ ବ୍ରହ୍ମବାଣି ଯେସନେ,
ସାଧୁପୁରୁଷଙ୍କ ମନେ ।

× × ×

ସ୍ୱଭାବେ ଶରଦର କାଳ,
ପବନ ବହେ ପରିମଳ ।

ଗଗନେ ପ୍ରକାଶିଲ ଶଶୀ,
ନିର୍ମଳ ବରାଜିଇ ନିଶି
ଫୁଟିଲେ ଜଳେ ସ୍ଥଳେ ଫୁଲ,
ସୁଗନ୍ଧ ଶୀତଳ ଅମୂଲ୍ୟ
ଚନ୍ଦ୍ରମଣ୍ଡଳ ଅଖଣ୍ଡିତ,
ଦେଖି ଉଷତ ଗୋପୀନାଥ !

ଏହି ସରଳ କୋମଳ ପଦାବଳୀରୁ ଶରତର ଗମ୍ଭୀର ଏବଂ ଭାବବ୍ୟଞ୍ଜକମୂର୍ତ୍ତି ଅନୁମେୟ । ଶରତଋତୁରେ ସମଗ୍ର ଧରଣୀ ପ୍ରାଣରେ ଯେପରି ସାତ୍ତ୍ୱିକ ଭାବଧାରା ପ୍ରବାହିତ !

ପୌରାଣିକ ଯୁଗରେ ଏହି ଋତୁର ଯେତେ ବର୍ଣ୍ଣନା କରାଯାଇଛି, ସେ ସମସ୍ତ ଦୈହିକ ସୌନ୍ଦର୍ଯ୍ୟର ପ୍ରଶସ୍ତି ନୁହେଁ, ବରଂ ତାହା ମାନବ ହୃଦୟ-ଜଗତର ସ୍ୱଚ୍ଛତା ଓ ନିର୍ମଳତାର ଶବ୍ଦ । କାରଣ ପ୍ରକୃତିର ସାତ୍ତ୍ୱିକ ପ୍ରଭାବ ବ୍ୟକ୍ତିକୁ ବହୁ ଭାବରେ ଉଦ୍‌ବୁଦ୍ଧ କରିଥାଏ । ଏହି ଋତୁର ଆହୁରି ଏକ ପ୍ରାଞ୍ଜଳ ଭାବଦ୍ୟୋତକ ବର୍ଣ୍ଣନା ଦେବଦୁର୍ଲ୍ଲଭ ଦାସଙ୍କ ରହସ୍ୟ-ମଞ୍ଜରୀରେ ପରିଲକ୍ଷିତ ହୁଏ—

ଭାଦ୍ରବର ଅନ୍ତେ ସଖି ଅଶ୍ୱିନ ପଡନ୍ତେ
ପ୍ରବେଶ ଶରତଋତୁ ପ୍ରତେଜ ଆଦିତ୍ୟ
ଚିଗନ୍ତୁ ଘଟିଲ ହିମ, ମନ୍ଦ୍ୟପେଣ ନନ୍ଦ
ବରଷା ବଞ୍ଚାଇ ମେଘ, ନାନାବର୍ଣ୍ଣ ଦର୍ଶ ।

ବର୍ତ୍ତମାନ ଆକାଶ ମେଘମୁକ୍ତ । ନିର୍ମଳ ଚନ୍ଦ୍ରମଣ୍ଡଳ ହୋଇଛି ନିଶୀଥର ଉପଭୋଗ୍ୟ ସାମଗ୍ରୀ । କିନ୍ତୁ ଶରତଋତୁର ପ୍ରକୃତି ସ୍ୱରୂପ ଓ ବିଳାସ ଓଡ଼ିଆ ସାହିତ୍ୟର ମଧ୍ୟଯୁଗୀୟ ଓଡ଼ିଆକାବ୍ୟ ଛନ୍ଦରେ

ଅର୍ଚ୍ଚନା କରାଯାଉଛି । ବର୍ତ୍ତମାନ ଆଉ ଗର୍ଜ୍ଜନକାରୀ ପ୍ରାବୃଟ ନାହିଁ । ବିରହଭାବ ଉଦ୍ଦୀପକକାରୀ ଶ୍ରାବଣ ସନ୍ଧ୍ୟା ନାହିଁ ସତ, କିନ୍ତୁ ଶରତର ନୀଳ ଚକ୍ରବାଳ ତଳେ ସ୍ୱଚ୍ଛ ଉଷାବଧୂର ଗୋଲାପୀ ପଣତ ତଳେ ପ୍ରବାସୀ ମନ ବର୍ଷାଠାରୁ ଅପେକ୍ଷା ବିଶେଷ ଉଚ୍ଛୃଙ୍ଖଳ ହୋଇ ଉଠୁଛି । ଶରତର ବୃନ୍ତଗୃଦ୍ଧନୀ ଯେପରି ଅତିଥିମାନଙ୍କୁ ନିମନ୍ତ୍ରଣ ଦେଇ ଯାଉଛି । ଏତିକିବେଳେ ଆତ୍ମା ଶାନ୍ତ ଓ ନିର୍ବିକାର; ଶାରଦୀୟ ପ୍ରକୃତି ସୌନ୍ଦର୍ଯ୍ୟ-ଉପଭୋଗୀ ଆତ୍ମାକୁ ଆହୁରି ସ୍ଥିତକଳ୍ପ କରିଦିଏ । ବ୍ୟକ୍ତି ଯେପରି ଅନନ୍ତ ଭୂମାଙ୍କର ସୌନ୍ଦର୍ଯ୍ୟ ପରିପାଟୀରେ ଉଦ୍‌ବୁଦ୍ଧ । ଦୀନକୃଷ୍ଣ ଦାସଙ୍କର ଶରତ୍‌ବର୍ଣ୍ଣନା କେତେ ପ୍ରାଣସ୍ପର୍ଶୀ ଓ ପ୍ରାଣ-ପ୍ରେମପ୍ଲାବନକାରୀ, ତାହା ଦ୍ରଷ୍ଟବ୍ୟ :—

କ୍ରମେ ପ୍ରବେଶ ହୋଇଲା ଶରଦ
କମଳାଧରେ ହସିଲେ ବିଶଦ
କୃପଣ ହୋଇଲେ ଅମୃତ ଦାନେ
କେବଳ ଉଦୟ ହେଲେ ଗର୍ଜ୍ଜନେ
କକୁଭ କର ହସିଲେ ଶୋଭା
କଲେ ପ୍ରକାଶ ପୁଷ୍ପକେ ଶୋଭା ।
କଳୁଷ ନଦୀଜଳରୁ ଛୁଟିଲେ
କମଳ କୁମୁଦମାନେ ଫୁଟିଲେ
କୃଷ୍ଣ ଅଙ୍ଗରେ ପୀତବାସ ପ୍ରାୟେ
କେଦାରେ ଚକ୍ରଶାଳୀ ଶୋଭା ପାଏ
କୁମାରୀ ଗୀତ ଶୁଣେ ବହୁତ
କରଇ ହରଷ ଜନଙ୍କ ଚିତ୍ତ,

କେଉଁଠାରେ ଶ୍ୱେତ ଛନ୍ଦ ଆକୃତି
କମମାସୁ ଦଣେ ଶିଳୀନ୍ଧ୍ର ଟନ୍ତି
କାମଦେବ ଶ୍ୱେତି ଭ୍ରମର ପ୍ରାଏ
କାଶତଣ୍ଡୀ ଫୁଲ ଚଳନ୍ତ ବାଏ ।

ଏଠାରେ କବି ଶରତଋତୁର ସୌନ୍ଦର୍ଯ୍ୟ ଓ ସ୍ୱଚ୍ଛତା ସଙ୍ଗେ ପ୍ରାଣର ଭକ୍ତି ଏବଂ ପ୍ରେମକୁ ସଂଯୋଜିତ କରି ଶାରଦୀୟ ପ୍ରକୃତିର ରସ ଆସ୍ୱାଦନ କରୁଛନ୍ତି । ଶରତଋତୁରେ ଶସ୍ୟ-ସମ୍ଭାର, ଅପରାଜିତାର ନୀଳ ସୌନ୍ଦର୍ଯ୍ୟ କବିପ୍ରାଣକୁ ଯେପରି ଝଂକୃତ କରିପାରିଥାଏ । ଉପେନ୍ଦ୍ରଭଞ୍ଜ ଶରତଋତୁର ନିର୍ମଳ ରାକା-ରଜନୀରେ ନାୟକନାୟିକାଙ୍କର ମନୋଭାବ ଯେପରି ଭାବେ ବର୍ଣ୍ଣନା କରିଛନ୍ତି, ସେଥିରେ ଲେଖନୀର ଦକ୍ଷତା ସହିତ ଶାରଦୀୟ ଉଲ୍ଲାସ ପୂର୍ଣ୍ଣ । "କୋଟିବ୍ରହ୍ମାଣ୍ଡସୁନ୍ଦରୀ", "ପ୍ରେମସୁଧାନିଧି", "ଲାବଣ୍ୟବତୀ", "ରସପଂଚକ" ପ୍ରଭୃତିରେ ଶାରଦୀୟ ପ୍ରକୃତି ଯେପରି ଶରନ୍ମୟୀ ତପସ୍ୱିନୀ ସଦୃଶ ।

ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜ
ଦିଶେ ଯଥା ଦର୍ପକଦର୍ପଣେ ଥିଲେ ମାଜି
ଗୃହୀ ଭ୍ରମର କାତର
ଲେଖି ଆରମ୍ଭିଲା ବସି ବନୀୟ ପତର ।

[ ପ୍ରେମସୁଧାନିଧି ]

ଏହି ବର୍ଣ୍ଣନାର ସୂଚନା ହିଁ ମାନବଜଗତର ଶରତ୍‌କାଳୀନ ପ୍ରତିକ୍ରିୟା ପ୍ରକାଶ କରୁଅଛି ।

ଦେଖି ନୀରଦ ବିରଦ ଶରଦ
ଋତୁକେଶରୀ ପ୍ରସରି ବିଷଦ

ବୃନ୍ଦେ ତମସବାସ ବନଦେଶ
ସ୍ଫୁଟେ ପ୍ରକାଶ କଲେ କାଳିହାସ ।
× × ×
ସେହି ଶରଦ ରାତିରେ ଚନ୍ଦ୍ରମା
ସେହି ପ୍ରକାରେ ହୋଇଛି ସୁଷମା
ସେହି ମୂର୍ତ୍ତି ଜୀବନେ ଅଛି ପୁଣି
ଏ ତ ବିଚାର ଦୂର ମୋ ତରୁଣୀ ଇତ୍ୟାଦି ···

ମଧ୍ୟଯୁଗର କାବ୍ୟସାହିତ୍ୟରେ ଶରତ୍‌କାଳୀନ ବର୍ଣ୍ଣନା ବିଶେଷ ସ୍ଥାନ ପାଇଅଛି । ଶରତ୍‌ରାସର ବର୍ଣ୍ଣନା ବିଭିନ୍ନ ରାଧାକୃଷ୍ଣ ରସତତ୍ତ୍ୱସମ୍ବଳିତ ଗ୍ରନ୍ଥମାନଙ୍କରେ ପରିଲକ୍ଷିତ ହୁଏ । ଶରତ୍‌କାଳୀନ ପୁଷ୍ପ, ତରୁଲତା, ନକ୍ଷତ୍ର, ଗ୍ରାମଗହଳର ଦେବ-ଦେବୀ ଓ ସାମାଜିକ ଉତ୍ସବ କାବ୍ୟଜଗତରେ ପ୍ରଶଂସାର ସହିତ ସ୍ଥାନ ପାଇଅଛି ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରଥମ ପ୍ରଭାତରେ କବିବର ରାଧାନାଥଙ୍କର ଶରତରତୁର ପ୍ରଶସ୍ତି ଓ ଉଦ୍‌ବୋଧନ କବିତ୍ୱପୂର୍ଣ୍ଣ ।

"ମନୋହର ଆହା ଯେହ୍ନେ ଶାରଦୀୟ ଉଷା
ମାହାରଭୂଷଣା କାବ୍ୟ ତାରକୁନ୍ତଳିନୀ
ପୁନର୍ବସୁ ପୃଷ୍ଠେ ଉଦେ, ପ୍ରାଚୀ ନଭଃ ପଟେ ।"

ମେଘବିମୁକ୍ତ ଉଷାକାଳ, ଶରତ ବଧୂର ଗ୍ରନ୍ଥିଚିତ୍ରପଟ୍ଟ ଯେପରି ପ୍ରାଚୀ ଚକ୍ରବାଳ ମୁକୁରରେ କିଏ ଲେଖିଦେଇ ଯାଇଥାଏ । ଉଷାର ଉଜ୍ଜ୍ୱଳତା, ପ୍ରସନ୍ନତା ସହିତ ପ୍ରଭାତ ତାରାର ଯେପରି ମଣିକାଞ୍ଚନ ସଂଯୋଗ ।

ଶସ୍ୟପୂର୍ଣ୍ଣ ବସୁନ୍ଧରା, ଚନ୍ଦ୍ରିକା ରଜନୀ, ପଲ୍ଲୀଉପକଣ୍ଠବର୍ତ୍ତୀ କଦମ୍ବ ଓ କମଳସମ୍ଭାର ରୂପରସଗନ୍ଧ ମୋହରେ ମୃତ୍ତିକା

ସେପ୍ରତି ଶାରଦୀୟ ପ୍ରକୃତି ନିକଟରେ ଚିରକୃତଜ୍ଞ । ଊର୍ଦ୍ଧ୍ୱଦେଶରେ ଅନନ୍ତ ନୀଳ ଆକାଶର ପ୍ରହେଳିକା, ପଲ୍ଲୀଜୀବନରେ କୁମାରୀ-ମାନଙ୍କର ନବଯୌବନ ଅର୍ଚ୍ଚନୀରୂପ ପ୍ରୀତି-ଉତ୍ସବ । ସର୍ବୋପରି ଯେଉଁ କୁମାର ପୂର୍ଣ୍ଣିମୀ ଏହି ଆଶ୍ୱିନର ବିଦାୟ ଯବନିକା ଟାଣିଦିଏ, ସେହି ପୂର୍ଣ୍ଣିମୀର ଚନ୍ଦ୍ରିକା ଶୀହରଣ କେବଳ ଜୀବନର ଐକ୍ୟ ସାଧନ କରି ନ ଥାଏ, ବରଂ ଏକ ଚିର ପବିତ୍ର ସୌନ୍ଦର୍ଯ୍ୟ ପ୍ରେରଣାରେ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିଥାଏ ।

ପଣ୍ଡିତ ନୀଳକଣ୍ଠ ଦାସଙ୍କର "ଗ୍ରାମଚଣ୍ଡୀରେ ସ୍ମୃତି ରେ ବିଦ୍ୟାର୍ଥୀର ଯେଉଁ କରୁଣ ସ୍ମରଣ :—

"ଆଜ ତ କୁଆଁର ପୁନିଅଁ କେତେ ସୁଖଭରିଧା
ମା ଭଉଣୀଙ୍କ ଆଦର ନବ ବସନ ପିନ୍ଧା,
ଲୁଗାରେ ହଳଦୀ ଲଗାଇ ଗୃହିଁଥିବେ ଜନନୀ
ପିଠାପଣା ଖାଉ ନ ଥିବେ ସୁଖେ ଆଜ ଭଗିନୀ
ରହ ରହ ବାଆବତାସୀ ରହ ବରଷାଧାର
ଆଜ ରେ କୁଆଁର ପୁନିଅଁ ହେଉ ରଜନୀ ପାର ।"

କି ଚମତ୍କାର ! ଶାରଦୀୟ ପ୍ରକୃତିର ଆବାଳବୃଦ୍ଧବନିତା ଉପରେ କି ପ୍ରଭାବ !

କବିବର ରାଧାନାଥଙ୍କ ଭାଷାରେ :—

ବର୍ଷାଗଲେଣି ଆସିଲା ଋତୁବିମଳ
ଦଶନ୍ତି କାନ୍ତ ବାସ୍ତେ ଦର୍ପଣ ଉଜ୍ଜ୍ୱଳ
ଜରଣ୍ଠ ବରଷାର ଧବଳ ଜଟା
କାଶକୁସୁମେ ଶୁକ୍ଳ ତଟିନୀ ପଠା
× × ×

କମଳ ଫୁଟି ଦହ ଶୋଭେ ଯେସନ
ନିର୍ଗୁଣ ବ୍ରହ୍ମଗୁଣ ଆଶ୍ରି ଯେସନ ।

× × ×

ନିଶାରେ ଉପୁଯାଏ କେତେ ଉଲ୍ଲାସ
ଚଳ ଚଳ ଚନ୍ଦ୍ରମା-ଧୌତ ଆକାଶ
ସେ ଭାବେ ଭୋଳ ହୋଇ ସାଧୁହୃଦୟ
ଭାଳେ ହେଲା କି ଜଡ଼ ବସ୍ତୁ ଚିନ୍ମୟ !

ଏଥିରୁ ସହଜରେ ଶାରଦୀୟ ପ୍ରକୃତିର ସାତ୍ତ୍ୱିକ ପ୍ରଭାବ ଜୀବନ ଉପରେ କିପରି ପଡ଼ିଥାଏ, ତାହା ଅନୁମେୟ । ଆଧୁନିକ ଯୁଗର କବି-ମାନେ ଶରତର ସୌନ୍ଦର୍ଯ୍ୟ ଓ ଶୁଭ୍ରତାକୁ ଯେପରି ପ୍ରେମ, ଭକ୍ତି, ସାଧୁତା ସହିତ ଜଡ଼ିତ କରାଇ ପାରିଛନ୍ତି ଏବଂ ଶରତର ଅନ୍ୟାନ୍ୟ ଦୃଶ୍ୟ-ସମ୍ଭାରରୁ ଯେପରି ଉପାଦାନ ସଂଗ୍ରହ କରି ପାରିଛନ୍ତି, ତାହା ବାସ୍ତବିକ ଆଦର୍ଶସ୍ଥାନୀୟ । ଶାରଦ ଉଷା, ଶାରଦ ସନ୍ଧ୍ୟା, ରମଣୀୟ ଶାରଦୀୟ ପ୍ରକୃତି ଓ ରୂପରାଗ ମର୍ଯ୍ୟର କବିମାନଙ୍କୁ କେବଳ ଉଦ୍‌ବୁଦ୍ଧ କରି ନାହିଁ । ରାଧାନାଥଙ୍କର ଶରତ୍ ବର୍ଣ୍ଣନା ଶିକ୍ଷଣୀୟ; ମାତ୍ର ତାହା ରସର ପରିପ୍ଲାବନରେ ଆହୁରି ଉପଭୋଗ୍ୟ ହୋଇଅଛି । ଭକ୍ତକବି ମଧୁସୂଦନଙ୍କ ଶରତ ବର୍ଣ୍ଣନା ପ୍ରତ୍ୟକ୍ଷୀଭୂତ ଓ ପଲ୍ଲୀପ୍ରାଣସ୍ପର୍ଶୀ ।

ରୁଚିର ଶରତକାଳ ବିରାଜିଲା ଆସି
ହସିଲା ଧରଣୀରାଣୀ ଶୋଭା ପରକାଶି ।

× × ×

ପ୍ରଦୋଷେ ଫୁଟଇ ଜହ୍ନି ଫୁଲ ଘରେ ଘରେ
ବାଳକେ ତୋଳନ୍ତି ତାହା ମହା ଆନନ୍ଦରେ ।

ଶରତଋତୁରେ ପଲ୍ଲୀଜୀବନର ଏହି ପ୍ରାଣସ୍ପର୍ଶୀ ହିଁ ପ୍ରତ୍ୟକ୍ଷୀଭୂତ

ସୌନ୍ଦର୍ଯ୍ୟର ସାବଲୀଳ ସଙ୍କେତ । ଶରତର ନିର୍ମଳ ପ୍ରଭାତ ଶୁଭଲଗ୍ନରେ କବି କିପରି ଜଞ୍ଜାଳମୁକ୍ତ ହେବାକୁ ଚାହାନ୍ତି:—

"ଛାଡ଼ି ବନ୍ଧୁ ନଗର ଚହଳ
ଯିବା ଚାଲି ଯେଉଁ ସ୍ଥାନେ, ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।

× × ×

ବନ୍ଧୁ ଏହି ଶରତ ସମୟ
ଗ୍ରାମରେ ବୁଲିବା ଆଜି, ଦେଖିବା କେମନ୍ତେ ସାଜି
ପ୍ରକୃତି ସୁନ୍ଦରୀ ହରେ ଭାବୁକ ହୃଦୟ
କରିବା ବିବିଧ ଗଳ୍ପ ଚିତ୍ତ ବିନମୟ ।

× × ×

ନନ୍ଦକିଶୋର ବଳ ଓଡ଼ିଆ ସାହିତ୍ୟରେ ବର୍ଷାମଙ୍ଗଳକବି ନାମରେ ଅଭିହିତ ହେଲେ ମଧ୍ୟ ତାଙ୍କର କେତେକ ବର୍ଣ୍ଣନା ଶରତ୍ ପ୍ରକୃତିର ଆଲେଖ୍ୟ ବହନ କରିଅଛି ।

କିନ୍ତୁ ଅତ୍ୟାଧୁନିକ କବିମାନଙ୍କ ରଚନାରେ ଶାରଦୀୟ ବଧୂ, ଶାରଦୀୟ ଚନ୍ଦ୍ର, ଶାରଦୀୟ ପ୍ରକୃତି, ଫୁଲ, ପତ୍ର, ତାରକା, ନୀଳାକାଶ ଯେପରି ଭାବରେ ଚିତ୍ରିତ ହୋଇଛନ୍ତି ଏବଂ ଶରତର ପାଣ୍ଡୁର ଜହ୍ନ କିପରି ଶିଥିଳ ଓ ରୁଗ୍‌ଣ, ତାହା କେବଳ ଆଧୁନିକ ସାହିତ୍ୟର ଉପମା-ଉପଚ୍ଛିମୟ ଜଗତରେ ବିପ୍ଳବାତ୍ମକ ମନୋଭାବର ଶୁଭ ଲକ୍ଷଣ ।

"ଭରା ଭାଦ୍ରରେ ବରଷା ଝରେ ଚରଣ ଜାଗେ
ବେଦନା କବି ତୋଳେ ପୂରବୀ ଲୀଳା ଅନୁରାଗେ" ।

× × ×

ଶରତର କଇଁଫୁଲ ସମ ତୁମ ପଦ
ପଡ଼ିଛ ମୁଁ ନମିତେ ଛଳ ବାଷ୍ପ ଗଦ ଗଦ ।
(ସ: ରାଉତରାୟ)

ଅତ୍ୟାଧୁନିକ ପତ୍ରପତ୍ରିକାମାନଙ୍କରେ ଶରତ୍‌ଋତୁରେ ବର୍ଣ୍ଣନା ଓ ପ୍ରସଙ୍ଗ ବିଶେଷ ପରିମାଣରେ ସ୍ଥାନ ଅଧିକାର କରିଥାଏ । ଏତଦ୍‌ବ୍ୟତୀତ ଗଳ୍ପ ଓ ଉପନ୍ୟାସମାନଙ୍କରେ ଶରତଋତୁର କ୍ରିୟା ଓ ପ୍ରତିକ୍ରିୟା ବହୁ ଭାବରେ ପ୍ରତିଫଳିତ ହେଉଅଛି । ପତ୍ରପତ୍ରିକାମାନଙ୍କର ବିଶେଷ ପୂଜାସଂଖ୍ୟା ଶାରଦୀୟ ପ୍ରକୃତି-ଦେବୀ ପଦତଳେ ଅର୍ପିତ ରକ୍ତମନ୍ଦାର ମାଳା ସିନା ! ଶେଫାଳୀ ଅପରାଜିତା କମଳ ପୂଜା ପାର୍ବଣରେ ଉତ୍ସବକୁ ଆହୁରି ବର୍ଣ୍ଣୋଜ୍ଜ୍ୱଳ କରିଦିଅନ୍ତି ।

କବିଙ୍କର :—

କୁମାରୀ ପୁନିଅଁ ଜହ୍ନ
ଉତଳା କରେ କା ମନ
କୁଆଁରୀ ଜୀବନ ପୂରି ସପନେ ଭରି
ଶରତର ନଈକୂଳେ
ବିଜନ କା ଗୀତି ଛଳେ
କାଶକୁସୁମ ଛଟା ଯାଏ ପଢ଼ିଁରେ ।

ଶରତଋତୁ ଅତ୍ୟାଧୁନିକ କବିମାନଙ୍କର ଅତି ପ୍ରିୟବନ୍ଧୁ ଓ ଆଧୁନିକ କବିତାମାନଙ୍କରେ ବହୁ ଭାବରେ ପ୍ରଶଂସିତ । କବି କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଡ. ମାୟାଧର ମାନସିଂହଙ୍କର କବିତାମାନଙ୍କରେ ଶରତ୍‌ବର୍ଣ୍ଣନା ଯେପରି ପ୍ରକୃତିର ସ୍ୱପ୍ନପୁରୀର ଶରତବାସ । କେଉଁଠାରେ ମୂର୍ତ୍ତି, କେଉଁଠାରେ ସଖା, କେଉଁଠାରେ ନିଭୃତ ନିର୍ଜନ ଶ୍ୟାମଳ ଆଶ୍ରୟ ତୁଲ୍ୟ ଶରତ ସମୟ ସେମାନଙ୍କର କବିତାରେ ଉପାଦାନ ଯୋଗାଇଅଛି ।

# "ବାଇ ମହାନ୍ତି" ପାଞ୍ଜିରେ ବ୍ୟଙ୍ଗର ଅଭିବ୍ୟକ୍ତି

ସାହିତ୍ୟିକ ମାତ୍ରେ ରଚନାରେ ନବରସ ଅବଲମ୍ବନ କରିଥାନ୍ତି ଏବଂ କାବ୍ୟକାରମାନଙ୍କ ନିକଟରେ ନବରସର ମୂଲ୍ୟ ସର୍ବାପେକ୍ଷା ଅଧିକ । ହାସ୍ୟରସ ଏହି ନବରସର ଅନ୍ତର୍ଗତ । ଏହି ହାସ୍ୟରସର ଭାଗ ବିଭାଗରେ ସୂକ୍ଷ୍ମ ରୂପେ ବଙ୍ଗ-ବିଦ୍ରୂପର ସ୍ଥାନ ନିର୍ଦ୍ଦିଷ୍ଟ କରାହୋଇଛି । କବି ଓ ଲେଖକମାନେ ନିଜର ଅଭିଳଷିତ ବସ୍ତୁ ଓ ଆଦର୍ଶର ପ୍ରାଖ୍ୟାପନ ତଥା ସମର୍ଥନ ଦୃଷ୍ଟିରେ ବହୁ ସମୟରେ ବ୍ୟଙ୍ଗ-ବିଦ୍ରୂପ, ହାସ୍ୟ-ଉପହାସର ତଥା ସାହାଯ୍ୟ ନେଇଥାନ୍ତି । ସାହିତ୍ୟିକ ମାତ୍ରେ ସମାଜ ତଥା ଜୀବନର ବିଶ୍ଳେଷ ଆଲେଖ୍ୟକାର । କବିର ସମ୍ମୁଖରେ ଜୀବନର ପ୍ରତିଛବିପଟ ପ୍ରତିଭାତ ହୋଇଥାଏ । କବି ସେଥିରେ କଳ୍ପନାର ରଙ୍ଗ ପ୍ରଦାନ କରିବାଯୋଗୁଁ ତାହା ସୁନ୍ଦର ଓ ସୁଦୃଶ୍ୟ ହୁଏ । ଜୀବନ ଓ ମନୁଷ୍ୟର ସମାଜ ଏକ ଅପୂର୍ଣ୍ଣ କାରଖାନା, ଯେଉଁଠାରେ ପ୍ରତିମୁହୂର୍ତ୍ତରେ ସଂଗଠନ ଓ ନିର୍ମାଣ ପ୍ରକ୍ରିୟା କାର୍ଯ୍ୟକାରୀ ହେଉଛି । ଆଜି ଏ ଯୋଜନା କାର୍ଯ୍ୟକାରୀ ହେବା ପଛରେ ଶତ ଶତ ଚିନ୍ତାଶୀଳ ବ୍ୟକ୍ତିଙ୍କର ପ୍ରଚ୍ଛନ୍ନ ପରିଶ୍ରମ ଓ ସାଧନା ନିହିତ ଅଛି । ସମାଜରେ ସମାଜର ଚଳଣୀ ସଂସ୍ଥା ତଥା ଅଭିବ୍ୟକ୍ତିରେ ବହୁ ବ୍ୟତିକ୍ରମ, ତ୍ରୁଟି, ଦୋଷ, କୁସଂସ୍କାର ପରିଦୃଷ୍ଟ ହୁଏ । ଜାତୀୟ ଜୀବନରେ ବହୁବିଧ କଳଙ୍କ ମୁଣ୍ଡଟେକି ଉଠେ, ବ୍ୟକ୍ତିର ଜୀବନ ସେତେବେଳେ ବିପନ୍ନ

ହୁଏ, ସେତେବେଳେ ଜାତୀୟ ଜୀବନ କଳଙ୍କିତ ହେବା ବିଚିତ୍ର ନୁହେଁ । ଯେପରି ଶରୀରର କୌଣସି ଅଂଶ ଅକର୍ମଣ୍ୟ, ରୋଗାକ୍ରାନ୍ତ ହେବା ଫଳରେ ସାରା ଶରୀର-ଯନ୍ତ୍ର ଉପରେ କ୍ରମେ କ୍ରମେ ବାଧା ଆସେ, ସେହିପରି ବ୍ୟକ୍ତିଗତ ଏବଂ ଜାତିର ଜୀବନରେ କଳଙ୍କ କ୍ରମେ ବୃଦ୍ଧିପାଏ । ଶେଷରେ ଏପରି ଅବସ୍ଥା ସୃଷ୍ଟିହୁଏ—ଯେତେବେଳେ ଜାତୀୟ ଜୀବନର ଐକ୍ୟ ସଂହତି ବିନଷ୍ଟ ହୋଇଥାଏ । ତେବେ ଏହି ସାମାଜିକ ଓ ଜାତୀୟ କଳଙ୍କ ଦୂର କରିବାରେ କେଉଁମାନେ ସମର୍ଥ, କାହାର ଆଦର୍ଶ ଓ ଭବିଷ୍ୟତ କର୍ମପ୍ରବାହ ଯୋଗୁଁ, ଏହି ଜାତୀୟ କଳଙ୍କ ଆପେ ଆପେ ଲୋପ ପାଇଥାଏ, ସାହିତ୍ୟକମାନେ ହିଁ ଏହି ସ୍ଥଳରେ ଉପଦେଷ୍ଟା, ସାହାଯ୍ୟକାରୀ ବନ୍ଧୁ । ଜଣେ ସମାଲୋଚକଙ୍କ ମତରେ—ବ୍ୟଙ୍ଗ-ବିଦ୍ରୂପ ସାହିତ୍ୟକମାନଙ୍କର ଅସ୍ତ୍ର । [ହୋରେସଙ୍କ ମତରେ ବ୍ୟଙ୍ଗବିଦ୍ରୂପ ହେଉଛି ଅପରାଧର ବ୍ୟବଚ୍ଛେଦ (satire is an exposition of crime) ।ସେହି ହୋରେସଙ୍କ ମତରେ He wrote satire because he had to write it. Satire has a definite purpose and a noble one. ପ୍ରକୃତ ପକ୍ଷେ ପ୍ରତ୍ୟେକ ହାସ୍ୟକାର ଏବଂ ବ୍ୟଙ୍ଗକାର, ପରୋକ୍ଷରେ ହେଉ, ପ୍ରତ୍ୟକ୍ଷରେ ହେଉ ଏହି କଥା ସ୍ୱୀକାର କରିଅଛନ୍ତି । ମେରେଡିଥ୍ କହନ୍ତି— The satirist is a moral agent often a social scavenger working in a storage of bile. ଆଡ଼ିସନ୍‌ଙ୍କ ଦୃଷ୍ଟିରେ—A satire should expose nothing but what is Corrigible and should make a due discrimination between those that are and those are not the proper objects of it ? ବିଭିନ୍ନ ଲେଖକମାନଙ୍କ ମତାନୁଯାୟୀ ବ୍ୟଙ୍ଗ ଓ ବିଦ୍ରୂପ ସାହିତ୍ୟକ୍ଷେତ୍ରରେ ଏକ ପ୍ରଧାନ ଉପାଦାନ ଏବଂ ଏହାର କାର୍ଯ୍ୟକାରିତା ଅଧିକ ପରିମାଣରେ ଅନୁଭୂତ ହୁଏ

ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗାତ୍ମକ ରଚନାର ସଂଖ୍ୟା ଅଧିକ ନୁହେଁ ଏବଂ ଯେଉଁ କେତେକ ହାସ୍ୟରସମୂଳକ ବ୍ୟଙ୍ଗାତ୍ମକ ଲେଖା ପରିଦୃଷ୍ଟ ହୁଏ, ସେଥିରେ ବ୍ୟଙ୍ଗର ଗାମ୍ଭୀର୍ଯ୍ୟ, ବିଦ୍ରୂପର ଉତ୍ସୃତା ଯଥେଷ୍ଟ ପରିମାଣରେ ଉପଲବ୍ଧ ହୁଏ ।

ଊନବିଂଶ ଶତାବ୍ଦୀର ଶେଷ ଭାଗ ଏବଂ ବିଂଶ ଶତାବ୍ଦୀର ଆଦ୍ୟାବସ୍ଥାରେ ଯେଉଁ କେତେକ ପ୍ରତିଭାଶାଳୀ ଲେଖକଙ୍କ ଲେଖାରେ ବ୍ୟଙ୍ଗବିଦ୍ରୂପ ବିଭାଗ-ରୂପାୟିତ ହୋଇଥିଲା, ସେମାନଙ୍କମଧ୍ୟରେ ସର୍ବତୋ ଭାବରେ କଥାକାର ଫକୀରମୋହନଙ୍କର ନାମ ସ୍ମରଣୀୟ । ବ୍ୟଙ୍ଗର ଆଶ୍ରୟରେ କବି, ଲେଖକ, ଗାଳ୍ପିକ କିମ୍ବା ଔପନ୍ୟାସିକ ମହତ୍ତର ଲକ୍ଷ୍ୟ ସାଧନରେ ନିର୍ଭୀକ ସତ୍ୟବାଣୀ ଓ ସତର୍କବାଣୀ ଶୁଣାଇ ଥାଆନ୍ତି । ବଳିଷ୍ଠ ଜାତୀୟଜୀବନ ଗଠନ, ସୁସ୍ଥ ସମାଜ ଭିତ୍ତି ସ୍ଥାପନ ଦିଗରେ ଫକୀରମୋହନଙ୍କର ବ୍ୟଙ୍ଗବହୁଳ ରଚନାବଳୀ ସମ୍ୟକ ଆଲୋକପାତ କରିଅଛି । ତାଙ୍କର ଚରିତ୍ରମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ଯଥା— 'ନାକଫୋଡ଼ିଆ ମା', 'ଗୋବରା ଜେନା' କିମ୍ବା ରାମଚନ୍ଦ୍ର ମଙ୍ଗରାଜ ସମ୍ଭବତଃ ବ୍ୟଙ୍ଗବିଦ୍ରୂପର ପ୍ରତିମୂର୍ତ୍ତି । ସେ ତାଙ୍କର ବ୍ୟଙ୍ଗବିଦ୍ରୂପର ଛୁରୀକା ସମଗ୍ର ସାମାଜିକ ଆବର୍ଜନା ସ୍ତୂପ ଉପରେ ଚଳାଇ ଅଛନ୍ତି ।

ଏହି ଯୁଗରେ ସାହିତ୍ୟିକ ଓ ସଂସ୍କାରକର ସାଙ୍ଗଠନିକ ମନୋଭାବ ନେଇ ଗୋପାଳଚନ୍ଦ୍ର ପ୍ରହରାଜ (୧୮୮୭-୧୯୪୫) ଓଡ଼ିଆ ସାହିତ୍ୟରେ ଯେଉଁ କେତେକ ଦୁର୍ଲ୍ଲଭ ଗ୍ରନ୍ଥ ପ୍ରଣୟନ କରିଛନ୍ତି, ତାହାର ସାହିତ୍ୟିକ ମୂଲ୍ୟ ଓ ସାମାଜିକ ମୂଲ୍ୟ କିଛି କମ୍ ନୁହେଁ । ସେ ତାଙ୍କର ସମଗ୍ର ବ୍ୟଙ୍ଗାତ୍ମକ ରଚନାମାନଙ୍କ ମଧ୍ୟରେ ଏକ ସୁଷ୍ଠୁ ଗଭୀର ସମାଜଦାୟିତ୍ୱବୋଧ ଏବଂ ଏକ ଉନ୍ନତ ଜୀବନର ମୂଲ୍ୟବୋଧର ସଙ୍କେତ ଦେଉଥିବାର ଜଣାଯାଏ । ବ୍ୟଙ୍ଗକାର ବା ହାସ୍ୟକାର ଲେଖକମାନେ

ପାଠକଙ୍କୁ ଯେତିକି ହସାଇପାରନ୍ତି, ତାହା ଅପେକ୍ଷା ତାଙ୍କର ଆଭ୍ୟନ୍ତରୀଣ ପ୍ରଭାବ ବେଶି । ବାକ୍ୟର ଅନ୍ତରାଳରେ ହାସ୍ୟସ୍ରଷ୍ଟା କବି ଯେ ଗୂଢ଼ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ କରିଥାନ୍ତି, ତାହା ବୁଝିବା କେବଳ ସୂକ୍ଷ୍ମଧର୍ମୀ ପାଠକ ପକ୍ଷେ ସମ୍ଭବ । କ୍ଷୁରଧାର ପରି ବ୍ୟଙ୍ଗ-କାରର ପ୍ରତ୍ୟେକ ବାକ୍ୟ, ପ୍ରତ୍ୟେକ ଶବ୍ଦ ଶାଣିତ । ବ୍ୟଙ୍ଗବିଦ୍ରୂପ ସୃଷ୍ଟି କେବଳ ଗୋଟିଏ ଗୁଣ ନୁହେଁ, ଏହା ଏକ ବିଶିଷ୍ଟ ପ୍ରତିଭା । ସମସ୍ତଙ୍କଦ୍ୱାରା ବ୍ୟଙ୍ଗବିଦ୍ରୂପ ରଚନା ସମ୍ଭବପରେ ନୁହେଁ ।

'ନନାଙ୍କ ବସ୍ତାନି,' 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' କିମ୍ବା ବାଇ ମହାନ୍ତି ପାଞ୍ଜିରେ ଗୋପାଳଚନ୍ଦ୍ର ଯେପରି ପ୍ରତିଭାତ ହୋଇଛନ୍ତି ତାହା ଦେଖିଲେ ପାଠକ ବିସ୍ମୟାଭିଭୂତ ହୋଇଥାଏ । ସମାଜ ଆଦର୍ଶ ମାନବବାଦ ଧର୍ମ ପୁଣ୍ୟ ପାପ ସମଗ୍ର ବିଶ୍ୱର ମିତ ଅମିତ ନାନାଦି ଚଳଣୀ ଏହି ରଚନାମାନଙ୍କରେ ପ୍ରତିଫଳିତ । ବାଇମହାନ୍ତି ପାଞ୍ଜି ପ୍ରଥମ ଖଣ୍ଡରେ ଗ୍ରନ୍ଥକାର ଯେଉଁ ସୂଚନା ଦେଇଛନ୍ତି ତାହା ପ୍ରଣିଧାନ ଯୋଗ୍ୟ । "ଆମ୍ଭେମାନେ ବାଇ ମହାନ୍ତଙ୍କ ଦୁରବସ୍ଥା ଦେଖି ଦୟା କରି ତାଙ୍କୁ ଅଧୁନାତନ-ତତ୍ତ୍ୱ-ଗବେଷଣା କାର୍ଯ୍ୟରେ ପ୍ରାୟ ୧ ବର୍ଷ ହେଲା ନିଯୁକ୍ତ କରିଅଛୁଁ । ତାଙ୍କର କାର୍ଯ୍ୟ ସ୍ଥାନେ ସ୍ଥାନେ ବୁଲି ଯାହା ଦେଖିବେ ତାହା ପାଞ୍ଜିରେ ଲେଖି ମାସକୁ ମାସ ଆମ୍ଭମାନଙ୍କ ନାମରେ କାଗଜ ଦାଖଲ କରିବେ ଓ ମାସକୁ ମାସ ଦରମା ବୁଝିନେବେ । ଏଥିରେ ତ୍ରୁଟି କଲେ ତହିଁର ଦଣ୍ଡ ପାଇବେ । × × × × × × × ଉତ୍କଳ ସାହିତ୍ୟ ସମ୍ପାଦକ ସଙ୍ଗେ ସାକ୍ଷାତ ହେବାରୁ ସେ ଆମ୍ଭମାନଙ୍କର ଖଣ୍ଡିଏ ପାଞ୍ଜି ତନ୍ନ ତନ୍ନ କରି ଦେଖି ଆମ୍ଭମାନଙ୍କୁ ଉପଦେଶ ଦେଲେ ଯେ ବାଇ ମହାନ୍ତଙ୍କର ପୁରୁଣା ଗୁଣର ଲେଖା ଓ ଭାଷାକୁ ଆଧୁନିକ ଲେଖା ଓ ଭାଷାରେ ଲେଖିଦେଲେ

ସେ ତାଙ୍କ ପତ୍ରିକାରେ ସମସ୍ତ ସମସ୍ୟାରେ ଦୃଷ୍ଟାଏ ଦୁଇ ଦୃଷ୍ଟି ସ୍ଥାନ ଦେଇ ପାରନ୍ତ ।"

ସାହିତ୍ୟ ଓ ସଂପାଦନା କ୍ଷେତ୍ରରେ ଯୁଗଭେଦରେ କ ପ୍ରକାର ପରିବର୍ତ୍ତନ ଆବଶ୍ୟକ, ଦେଶୀୟ ଆଭରଣର ଉପକାରିତାରେ ଗୋଡ଼ରେ ୧ ଦଶା ରୁ ୧୨ କମ୍ବା ଖଡ଼ୁ ଦୃଷ୍ଟି ପରିକଳନା କିଂବା ଦୁଷ୍ଟ ସ୍ୱାମୀ ଦମନ, ଉପରି ଅଧୂରେ ଯୁବକ ଛାତ୍ରଙ୍କର ଅଜୀର୍ଣ୍ଣ ଓ ଚଷମା, କୋଇଲାଖଣିର କୁଳିର ଶ୍ୱାସରୋଗ କିଂବା ମାନ୍ୟଗଣ୍ୟ ହେବାକୁ ହେଲେ ବିବେକକୁ ବଳିଦେଇ ତାସ୍ ଚରିତ୍ର କଳନ କରିବା ପ୍ରଭୃତି ପ୍ରୟୋଗ ଗ୍ରନ୍ଥକାରଙ୍କର ସୂକ୍ଷ୍ମ ଦୃଷ୍ଟିକୋଣରେ ପରିଚୟ ଦିଏ । ଦେଶରେ ସ୍ତ୍ରୀ ଶିକ୍ଷା ବୃଦ୍ଧିହେଲେ ସ୍ତ୍ରୀ ଜାତିର ମଧୁରତା ଉଠିଯିବ । ଅଧିକାଂଶ ଘରେ ବାଘପାଲ ଚଉଁର ଉପର ଅଭିନୟ ହେବନାହିଁ ।

'ଗଜଗମନା' ବିଶେଷଣଟି ଉଠିଯିବ, ଚୁଁ ଓ ଠାର ନେହପଥରେ ପଡ଼ିବ ନାହିଁ ଏବଂ ଶେଷରେ ପୁରୁଷଜାତି ଦିନେ ପ୍ରତ୍ୟେକ କାର୍ଯ୍ୟରେ ନିଯୁକ୍ତ ହେବାକୁ ପଡ଼ିବ ଏକାଦଶୀ ବ୍ରତ ଧରି ବିଦାୟ ନେବ, ଏସବୁ ଅବତାରଣା ଦ୍ୱାରା ପ୍ରହରାଜ ଉଭୟ ସ୍ତ୍ରୀ ଓ ପୁରୁଷଙ୍କୁ ସାବଧାନ କରିଦେଇଛନ୍ତି । ତାଙ୍କର ଶେଷ ଉପସଂହାର ଯଥା ଅନ୍ଧ ସମାଜ ଚକ୍ଷୁଖୋଲି ଏ ବର୍ଣ୍ଣନାକୁ ଶୁଣ, ଭାବ କାର୍ଯ୍ୟକର । ସ୍ତ୍ରୀ ଶିକ୍ଷା ପ୍ରଚଳିତ ହେଲେ ତୁମର ମାନ ଯିବ । ତୁମର ସର୍ବନାଶ । ମାତ୍ର ପ୍ରହରାଜଙ୍କର ଏହି ଅଭିବ୍ୟକ୍ତିର ଅନ୍ତରାଳରେ ଉଦ୍ଦେଶ୍ୟ ଭିନ୍ନ । ସେହିପରି ହିନ୍ଦୁ ସମାଜରେ ବିଧବା ବିବାହ ପ୍ରଚଳନ ଦ୍ୱାରା ବିଶ୍ୱରିଷ୍ଠ ଗାନ୍ଧ ଆଶୀର୍ବାଦରେ ପରିଣତ ହେବ; କମ୍ବା ଅନେକ ଗୁପ୍ତ ଔଷଧ ବ୍ୟବସାୟୀଙ୍କ ଆୟରେ ବାଧାପଡ଼ିବ ପ୍ରଭୃତି ଲାଭ କ୍ଷତି ପ୍ରସଙ୍ଗ ଉଠାଇ ଶେଷରେ "କିଏ ଶୋଇବ ଯେ, ତାକୁ ଉଠାଇବ କିଏ" ଦ୍ୱାରା ଦେଶ

ଓ ସମାଜର ପ୍ରକୃତ ଅବସ୍ଥା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି "ଧୋବଧାଉଳିଆ ଗୈର କରନ୍ତି ରକ୍ଷଣୀ ଦେଖିଲେ ମାରି ଗୋଡାନ୍ତି", ଗରିବ ମାଇପ ସମସ୍ତଙ୍କର ଶାଳୀ କମ୍ପା ଗୋଟିଏ ସହ୍ୟ ବାବୁ ସହସ୍ର ସହସ୍ର ଅସଭ୍ୟ ମୂଳିଆଙ୍କ ଅର୍କ, ମାରେ ସିପାହୀ ନାମ ସରଦାର ବା କୁହୁଡ଼ିଟରେ ସଭ୍ୟତା ମାଡ଼ିଆସିବା, ଅଙ୍ଗରେଜୀ ପଢ଼ିବା ଚଢ଼ଉ ଯୋଡ଼ା ମାଡ଼ିଆସିବା ଲଣ୍ଡା ହେବା କରସ୍ଥାନ ହେବା, ବାସ୍ତବିକ ଏ ଦେଶରେ ନକଲ କରୁଛି "ହନୁକରଣ" ଲୀଳାର କି ବ୍ୟଙ୍ଗାତ୍ମକ ଅଭିବ୍ୟକ୍ତି । ପ୍ରହରାଜଙ୍କ ଭାଷାରେ କି ବଳିଷ୍ଠତା !

Satire should like a polished razor keen wound with a touch that is scarcely felt or seen (Horace).

ଗୋପାଳଚନ୍ଦ୍ର ମଧ୍ୟ ଯେଉଁ ଅଭିନବ କୌଶଳ ଦ୍ୱାରା ସମାଜସ୍ଥ ବ୍ୟକ୍ତିମାନଙ୍କର ଦୋଷଦୁର୍ବଳତାକୁ ଦେଖାଇ ଦେଇଛନ୍ତି, ତାହା ନାନା ଭାବରେ ଯାଦୁକାରର ଗାରୁଡ଼ିମନ୍ତ୍ର ସଙ୍ଗେ ସମାନ । ଗୋପାଳଚନ୍ଦ୍ର ବାଇ ମହାନ୍ତି ପାଞ୍ଜିରେ ପ୍ରକୃତିର ଅନ୍ତର୍ନିହିତ ଦୋଷଦୁର୍ବଳତା ପ୍ରତି ଚିବୁକ ଦେଇ ଅଛନ୍ତି । ବାଇମହାନ୍ତି ପାଞ୍ଜିରେ ଦ୍ୱାଦଶ ଝଡ଼ାରେ ଲେଖାହୋଇଛି ବଡ଼ ବଡ଼ ବହିର ମଲାଟମାନ ଏତେ ଝୁପ ଚକ୍‌ଚକ ହୁଏ, କେଉଁ କାରଣରୁ ବୁଝିଲ କି ନା ମନୁଷ୍ୟ ପ୍ରକୃତି ଏଡ଼ିବାର ବସ୍ତୁ ନୁହେ । ଚିରିକନା ବୁଟାଦାରର ବନାରସି ପ୍ରଭେଦ କାଲିଥିଲା । ଆଜି ଅଛି କାଲି ଥିବ ଏଥିରେ ଦ୍ୱିଧା ନାହିଁ ନ ଥିଲା ନ ହେବ "(ଦ୍ୱାଦଶ ଝଡ଼ା ପୃ ୧୫୯)" । ଦେଶ ଯେତିକି ସଭ୍ୟ ହୁଏ, ମଦଦୋକାନ ସେତିକି ବେଶି ହୁଏ. ଏହା କଣ ପଣ୍ଡିତ ମନ୍ୟ । ସଭ୍ୟତାଗର୍ବୀ ଶିକ୍ଷିତମାନଙ୍କ ପ୍ରତି ବାକ୍ୟବାଣ ନୁହେଁ କି? ବନ୍ଧୁ ଲୋକଙ୍କ

ଘର କେତେ ଭଙ୍ଗାଘରର ସମଷ୍ଟି । ପ୍ରହରାଜ ଏଠାରେ ମଣିଷ ସମାଜର ବିରାଟ ସତ୍ୟ ବିଶ୍ଳେଷଣ କରିଛନ୍ତି ସିନା ! ସହରର ମହାଜନ ବିଷ୍ଣୁଙ୍କ ତୃତୀୟ ଅବତାର ସଙ୍ଗେ ବାଇ ମହାନ୍ତିଙ୍କ ପୁଅ ଲେଖା ମଫସଲୀ ଓଳ୍ପି ଆଉ କଟକିଆ ଚତୁର, ସହର ମଫସଲର ଶଠ, ସହରରେ ମନ୍ତ୍ର ଯେତିକି ବଇଦ ସେତିକି । ରୋଗ ତହିଁରୁ ଦ୍ୱିଗୁଣ ଗାଁରେ; କିନ୍ତୁ ଛ ସାତ ଖଣ୍ଡ ଗାଁରେ ଜଣେ ବଇଦ ।

ଗୁଆଚିଗଆଁ ରଥେ, ବାଜପେୟୀ ସାନ୍ତେ, ଜକ ମିଶ୍ରେ ଏମାନେ ହେଲେ ସମାଜର ଖୁଣ୍ଟ । ଯେ ଯାହା କହନ୍ତୁ ବାଇମହାନ୍ତିଙ୍କର ଧାରଣା, ହିନ୍ଦୁଧର୍ମ ଯେ ସବୁଦିନେ ପ୍ରତିଷ୍ଠିତ ଅଛି, ଯେତେଦିନ ଯାଏ ଜଗନ୍ନାଥ ଦେଉଳ ଅଛି, ସେତେଦିନ ଯାଏ ପୁରୀର ଶାସନ ବ୍ରାହ୍ମଣେ ନିର୍ଦ୍ଧନତା ଓ ନିରନ୍ନତା ହେତୁ କଷ୍ଟ ଭୋଗିବେ ନାହିଁ । ଏହା ଯେତିକି ବ୍ୟଙ୍ଗ ଓ ବିଦ୍ରୂପରେ ଜର୍ଜ୍ଜରିତ, ସେତିକି ପ୍ରତ୍ୟକ୍ଷ ଅବସ୍ଥାର ପର୍ଯ୍ୟବେକ୍ଷଣରେ ପୂର୍ଣ୍ଣ । ବାସ୍ତବିକ ସମାଜତାତ୍ତ୍ୱିକ ଦୃଷ୍ଟିରୁ ବାଇମହାନ୍ତି ପାଞ୍ଜିର ମୂଲ୍ୟ ସର୍ବାଧିକ । ଦେବତାଙ୍କ ସ୍ଥାନରେ ଅଶ୍ଳୀଳ ମୂର୍ତ୍ତିଗୁଡ଼ିକ ଦେଖି ଯେତେବେଳେ ମନରେ ସ୍ୱର୍ଗୀୟ ଓ ଆଧ୍ୟାତ୍ମିକ ଭାବ ଜାଗରିତ ହେବା ନିମନ୍ତେ ଆଇନ ଅନୁସାରେ ବାଧ, ସେତେବେଳେ ଦେବତା ଦର୍ଶନ ଉଦ୍ଦେଶ୍ୟରେ ସ୍ୱାଧୀନତା କେବେହେଁ ଅନ୍ୟଥା ଓ ପରିମାଣ-ଯୁକ୍ତ ହେବା ସମ୍ଭବ ନୁହେଁ । ଗୁରୁ ଦାଣ୍ଡରେ ଶତ ଶତ ଅବୁଝ, ଲୋକଙ୍କୁ ପ୍ରହରାଜେ ଲକ୍ଷ୍ୟ କରିଛନ୍ତି । ମୋଟ ଉପରେ ପ୍ରହରାଜଙ୍କ ବ୍ୟଙ୍ଗ-ଧର୍ମୀ ଦୃଷ୍ଟିକୋଣ ଅତ୍ୟନ୍ତ ଗମ୍ଭୀର ଓ ମାନବିକ ଆବେଦନ ହାରା ତାହା ପ୍ରାଣସ୍ପର୍ଶୀ ଏବଂ ତାଙ୍କର ରଚନାରେ ବ୍ୟଙ୍ଗ-ବିଦ୍ରୂପ ସଂସ୍କାର ଉଦ୍ଦେଶ୍ୟରେହିଁ ପ୍ରଯୁକ୍ତ ।

# ହାସ୍ୟ ରଚନା ଓ ଲକ୍ଷ୍ମୀକାନ୍ତ

( ୧୮୮୮-୧୯୬୩ )

ପ୍ରାଚୀନ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟରେ ହାସ୍ୟରସର ଅଭାବ ନ ଥିଲେ ହେଁ ବିଶେଷ ପ୍ରତିଭାଶାଳୀ ସୂଚତୁର ସ୍ରଷ୍ଟାଙ୍କର ଲେଖନୀରେ ହାସ୍ୟରସର ସମୁଜ୍ଜ୍ୱଳ ସ୍ଫୁରଣ କ୍ୱଚିତ ସମ୍ଭବ ହୋଇଅଛି । ଓଡ଼ିଆ ସାହିତ୍ୟର ବିଂଶ ଶତାବ୍ଦୀର ଆବିର୍ଭାବରେ ସାହିତ୍ୟରେ ଶାର୍ଷ ଶୀର୍ଷ ପୃଷ୍ଠାକୁ ଯେଉଁ ପ୍ରତିଭାଶାଳୀ କବି ଓ ସମାଲୋଚକମାନେ ଋପସିକ୍ତ କରି ପାରିଛନ୍ତି, ସେମାନଙ୍କ ମଧ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ନାମ ସର୍ବାଗ୍ରେ ପାଠକର ମାନସ ପଟରେ ପ୍ରତିଭାତ ହୋଇଥାଏ । ଓଡ଼ିଆ ସାହିତ୍ୟରେ ଧାରାବାହିକ ଭାବରେ ଲକ୍ଷ୍ମୀକାନ୍ତଙ୍କ ହାସ୍ୟରସମୂଳକ ରଚନା ପରିବେଷଣ ଚଳିତ ଶତାବ୍ଦୀର ପ୍ରଥମାର୍ଦ୍ଧର ହେଉଛି ମୂଳ ଲକ୍ଷଣ । ଆମ ସାହିତ୍ୟ ଯେପରି ଉନ୍ନତ, ମାର୍ଜିତ, ଏବଂ ସୂକ୍ଷ୍ମଶ୍ରେଣୀ ବିଭାଗ-ସମ୍ପନ୍ନ, ହାସ୍ୟରସର ପ୍ରକାଶ ହୋଇ ପାରିନାହିଁ; ଯେପରି ସ୍ଥଳେ ପ୍ରତ୍ୟେକ କଥାରେ ହସିବା ପାଇଁ ଉପାଦାନ ସଂଗ୍ରହ କରିପାରିବା କାନ୍ତ କବିଙ୍କ ପରି ଯାଦୁକର ପକ୍ଷେ ସମ୍ଭବ ସିନା ! ହାସ୍ୟରସ ସମ୍ପର୍କରେ ସ୍ୱୟଂ ଲେଖକଙ୍କର ଧାରଣା ସଂପୂର୍ଣ୍ଣ ମୌଳିକ । ସେ ତାଙ୍କର ହାସ୍ୟରସମୂଳକ ପ୍ରବନ୍ଧରେ ସ୍ପଷ୍ଟରୂପେ ପ୍ରକାଶ କରିଥିଲେ—

"ଯେ ନିଜେ ଭିତରେ ଭିତରେ ହସି ଉପରକୁ ଗାମ୍ଭୀର୍ଯ୍ୟ ରଖି ଅନ୍ୟକୁ ହସାଇପାରେ, ସେହିଁ ପ୍ରକୃତ ହସସ୍ରଷ୍ଟା ରସିକ । ସ୍ନେହପର ହାସ୍ୟକୁଶଳୀ ବଡ଼ ବିରଳ ! ହଜାରକରେ ଜଣେ ଅଧେ ମିଳିବା

ବଡ଼ କଠିନ । ଏଇଥିପାଇଁ ବୋଧେ ସାହିତ୍ୟିକମାନଙ୍କ ମଧ୍ୟରେ ଆଜି, କାଲି, କରୁଣାଦ୍ଧ ରସର ଦେବେଇଙ୍କେ ଯେତେ, ହାସ୍ୟରସିକ ତାର ଶତାଂଶରୁ ଏକାଂଶ ମିଳନ୍ତି ନାହିଁ । ଏହା କେବଳ ଗୁଣ ନୁହେଁ, ଗୋଟାଏ ପ୍ରତିଭା; ଯାହା ଦାନ କରିବାକୁ ଭଗବାନ ବି କୃପଣ ।" କାନ୍ତକବି ହେଉଛନ୍ତି ଏକ ଉଚ୍ଚଧରଣର ହାସ୍ୟରସ କୁଶଳୀ ଓ ସ୍ରଷ୍ଟା । ହାସ୍ୟରସର ଉପାଦାନ, କିମ୍ବା ପରିବେଷଣ, ଏହାର ସୀମା ଓ ବିସ୍ତୃତି ସମ୍ପର୍କରେ ତାଙ୍କର ଉପରୋକ୍ତ ମନ୍ତବ୍ୟ ଅତି ମୌଳିକ । ବାସ୍ତବିକ ବନେ କୃତ୍ରିମରେ କଳା ପ୍ରତିମୂର୍ତ୍ତିରେ ଅନ୍ୟର ପ୍ରାଣକୁ ସ୍ପର୍ଶକରି ତାହାର ଅନ୍ତରାଜ୍ୟରେ ଭାବ ଓ ଚିନ୍ତା ସଞ୍ଚାର କରାଇବା କେବଳ ଶ୍ରମ ଓ ଦୃଷ୍ଟି କୋଣ ସାପେକ୍ଷ ନୁହେଁ ବରଂ ଈଶ୍ବରଦତ୍ତ ପ୍ରତିଭା ସାପେକ୍ଷ । ଅନ୍ୟାନ୍ୟ ବହୁ ରସର ବିପରୀତ ଅବସ୍ଥା ହେଉଛି ହାସ୍ୟରସ, ଏହି ହାସ୍ୟରସ ଆମୋଦ ପ୍ରମୋଦର ପଥ ପରିଷ୍କାର କରିବା ସଙ୍ଗେ ସଙ୍ଗେ, ମାନବର ହୃଦରାଜ୍ୟରୁ ଚିନ୍ତା, ଅବସାଦ, ଗ୍ଲାନି ଦୂରକରେ । ଅନ୍ୟାନ୍ୟ ରସର ଅନୁଭୂତି ମନୁଷ୍ୟ ପ୍ରାଣର ଆନନ୍ଦ ଓ ପ୍ରାସାଦ ନିମନ୍ତେ ଦାୟୀ, ମାତ୍ର ହାସ୍ୟରସ ମନୁଷ୍ୟ ପ୍ରାଣର ଲଘୁ ତରଳ ସରଳ ପ୍ରାଣପୂର୍ଣ୍ଣ ଉପଭୋଗ ପାଇଁ ଏକମାତ୍ର ଅସ୍ତ୍ର ହାସ୍ୟରସ ସଂପର୍କରେ କାନ୍ତକବିଙ୍କର ଯେଉଁ ଚିନ୍ତା, ଧାରଣା, ତାହା ବ୍ୟକ୍ତିଗତ ହେଲେହେଁ ପରିପ୍ରେକ୍ଷୀ ଓ ପ୍ରୟୋଗରେ ତାହାର ବିସ୍ତୃତି ଅଧିକ ଓ ଅପରିମେୟ ।

ସାହିତ୍ୟରେ ବୈଜ୍ଞାନିକ କିମ୍ବା କୃତ୍ରିମ ଆଚରଣ ଲେଖକଙ୍କୁ ବହୁତ ସୁଯୋଗ ଓ ସୁବିଧା ଦେଇଥାଏ । ରୋମାଂଚବାଦ, କିମ୍ବା ଆତ୍ମ ସର୍ବସ୍ୱ ପ୍ରେମ ଓ ପ୍ରଣୟ ଠାରୁ ଲେଖକଙ୍କୁ ଦୂରକରି ଦେଇଥାଏ ଏହି ସ୍ପଷ୍ଟ ଦୃଷ୍ଟିକୋଣ । ସତ୍ୟପ୍ରକାଶ ଉଦ୍ଦେଶ୍ୟହିଁ ଲେଖକଙ୍କୁ ବହୁ ସମୟରେ

ଅନ୍ତର୍ବାଙ୍ଗ କରି ପକାଇଥାଏ । ହାସ୍ୟ ରସ, ବ୍ୟଙ୍ଗବିଦ୍ରୂପ ରଚନାରେ ଯେଉଁ ଦୃଷ୍ଟିକୋଣ ଥାଏ, ତାହାହିଁ କବିର ଆତ୍ମସର୍ବସ୍ୱ ଓ ମୌଳିକତା । ରଚନା ମାଧ୍ୟମରେ କବିର ଏହି ଦୃଷ୍ଟି ଭଙ୍ଗୀ ଶାଣିତ ହେଉଥାଏ । ଏଭଳି ଏକ ଶବ୍ଦରେ ଯେଉଁ ଗୁରୁତ୍ୱ ଓ ଭାବାର୍ଥ ପ୍ରକାଶ ପାଏ, ସେଥିପାଇଁ ସାହିତ୍ୟିକର ମାନସ ପ୍ରଦେଶରେ କ୍ରିୟା ପ୍ରତିକ୍ରିୟା ଦାୟୀ । ବ୍ୟଙ୍ଗ ବିଦ୍ରୂପ, ହାସ୍ୟ ଉପହାସ, ଏ ସମସ୍ତ ଲେଖକମାନଙ୍କର ଏକାଧିପତ୍ୟ ବିସ୍ତାର ବୋଲି କେହି କେହି ମନେ କରନ୍ତି, ମାତ୍ର ଏହା ସତ୍ୟ ନୁହେଁ । କାରଣ ଯେପରି ବ୍ୟକ୍ତିର ଆତ୍ମପ୍ରକାଶ ଶବ୍ଦ ମାଧ୍ୟମରେ ହୁଏ, ମାତ୍ର ଶବ୍ଦ ତାହାର ଏକଚାଟିଆ ଅଧିକାର ନୁହେଁ ଠିକ୍ ହାସ୍ୟରସ କ୍ଷେତ୍ରରେ ଏହି ମତାମତ ଅବଧାରଣ ଯୋଗ୍ୟ, ଭାଷାରେ ହିଁ ବ୍ୟକ୍ତିତ୍ୱ ପ୍ରକାଶ ପାଏ, ମାତ୍ର ଏ ଯଥେଚ୍ଛାଚାରକୁ ପ୍ରଶ୍ରୟ ଦିଏନାହିଁ । ଶବ୍ଦ ଓ ଅଭିବ୍ୟକ୍ତି ମଧ୍ୟରେ ଯେଉଁ ଶୃଙ୍ଖଳା ଓ ସଂଯମ, ହାସ୍ୟରସ ଲେଖକ ତାର ଦୃଷ୍ଟିରେ ସେପରି ଶୃଙ୍ଖଳିତ । ତେବେ ଏହି ହାସ୍ୟ ରସର ପରିସର କଅଣ ? ଏହି ବ୍ୟଙ୍ଗବିଦ୍ରୂପ ପରିସର କଅଣ ? ଏହି କ୍ଷୁଦ୍ର ପ୍ରବନ୍ଧରେ ସେ ବିଷୟ ଆଲୋଚନା କରିବା ସମ୍ଭବ ନୁହେଁ । ତେଣୁ ଯେତିକି ଆଲୋଚନା ସମ୍ଭବ ତାହାହିଁ ବିଚାର କରାଯିବ । କାନ୍ତକବି ତାଙ୍କର ବହୁ ଗଳିକା, ଗପ, କାହାଣୀ ଏବଂ ଭଜନ ମାଧ୍ୟମରେ ନବରସ ଅନ୍ତର୍ଗତ ହାସ୍ୟରସର ଏକାନ୍ତ ଉପାସନା କରି ପାରିଛନ୍ତି । ତାଙ୍କର ପ୍ରତ୍ୟେକ କଥା, ପ୍ରତ୍ୟେକ ବାକ୍ୟରେହିଁ ପ୍ରତିଭାର ଏହି କୌତୁକ ଆଘାତ ପ୍ରକାଶ ପାଇଥିଲା । ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଛନ୍ତି, ସେମାନେ ଅବଶ୍ୟ କାନ୍ତକବିଙ୍କ ହାସ୍ୟରସ ରଚନାର ଓଜନ ଗାମ୍ଭୀର୍ଯ୍ୟ କଳନା କରି ପାରିଥିବେ । କବି ଯେଉଁ ହାସ୍ୟରସର ଉପାସକ ତାଙ୍କ ଲେଖାରେ ତାହା ଓଡ଼ିଆ ସାହିତ୍ୟ ପୃଷ୍ଠାରେ ପ୍ରତିଭାତ ହୋଇ ପାରିଛି । ବ୍ୟଙ୍ଗ, ବିଦ୍ରୂପ, ହାସ୍ୟ, କୌତୁକ, ଥଟ୍ଟା, ଟାପରା,

ରଙ୍ଗ,ଥଟ୍ଟା, ଦେଖସା, ଶଙ୍କରାମି, ପରିହାସ, ନକଲି, ଖୁଣ୍ଟା, ଟାହୁଳି, ଲିଙ୍ଗିତ, ଛିଗୁଲ, ଏପରି ବହୁ ଅର୍ଥରେ ବାସ୍ତବିକ ପ୍ରଯୁକ୍ତ ହୋଇପାରେ କିନ୍ତୁ ସାହିତ୍ୟିକମାନଙ୍କର ବିଶେଷତଃ ସଂସ୍କାରକାଙ୍କ୍ଷୀ ଲେଖକ,ଔପନ୍ୟାସିକ, କବି, ନାଟ୍ୟକାରମାନଙ୍କ ଲେଖାରେ ବ୍ୟଙ୍ଗ ବିଦ୍ରୂପର ଅଭିବ୍ୟକ୍ତିହିଁ ପ୍ରଧାନ ଅସ୍ତ୍ର ହୋଇପଡ଼େ । ବ୍ୟଙ୍ଗ ବିଦ୍ରୂପର ଏକମାତ୍ର ଉଦ୍ଦେଶ୍ୟ ହେଉଛି, ଯାହା ଆପାତତଃ ଅସ୍ୱାଭାବିକ, ତାହାର ଆଶୁ ପରିବର୍ତ୍ତନ।ଏହି ବିଦ୍ରୂପାତ୍ମକ ଅଭିବ୍ୟକ୍ତିର ସ୍ୱରୂପ କଅଣ ? ସାଧାରଣତଃ ସଂଳାପ ଓ ଅଳାପରେ ଯେବେ କୌଣସି ଶବ୍ଦ ତାହାର ଅଭିଧାନିକ ଅର୍ଥରୁ ବଞ୍ଚିତ ହୁଏ, କିମ୍ବା କୌଣସି ଦେହ କଥୋପକଥନ ଅବସରରେ ମୂଳଅର୍ଥରେ କୌଣସି ବିକୃତ ହୁଏ; ତେବେ ସେହିଠାରେହିଁ ବିଦ୍ରୂପର ଉତ୍ପତ୍ତି ସମ୍ଭବ । ଏହି ବିଦ୍ରୂପରେ ଭାବ ରାଜ୍ୟର ପ୍ରତିକ୍ରିୟାହିଁ ନିହିତ ଥାଏ ।

For irony has an emotional element which it is so hard to mistakethat attention is diverted to the dramatic setting wherein the ironic spirit seems most at home and it escapes notice that a thing emotionally clear is often intellectually abstruse.

ଏଥିରୁ ଜଣାପଡ଼େ ଯେ ଭାବ ଓ ବୌଦ୍ଧିକ ଜଗତରେ ଏହି ବିଦ୍ରୂପାତ୍ମକ ଅଭିବ୍ୟକ୍ତିରେ କେତେକ ଦୁର୍ବୋଧ୍ୟତା ରହିଯାଇଥାଏ । ଭାବଜଗତରେ ଯାହାର ଅର୍ଥ ସହଜଲବ୍ଧ, ବୁଦ୍ଧି କ୍ଷେତ୍ରରେ ତାହାର

The element of irony as in English literature, Page—3.

ସୂଚନା ଭିନ୍ନ ହୋଇପାରେ । ବିଶ୍ଳେଷଣ ଭାବରେ ଶବ୍ଦର ଅର୍ଥ ଅନେକ ସମୟରେ ଲୁପ୍ତ ହୋଇପଡ଼େ । ସେହି ଶବ୍ଦର ଏହି ସମ୍ମିଶ୍ରାତ୍ମକ ରୂପ ହେଉଛି ବିଦ୍ରୂପର ଅନ୍ତରାତ୍ମା । ରାଜ୍ୟରେ ବିଶେଷର ଅନୁଭୂତି କ୍ଷେତ୍ରରେ ଏହି ବିଦ୍ରୂପ ଜାତ୍ୟଶ୍ରେଣୀରେ ବିଭକ୍ତ । ବିଦ୍ରୂପ ସରଳ ଅବସ୍ଥା-ମୂଳକ, ନିୟତି ଏବଂ ନାଟକ ମୂଳକ ହୋଇପାରେ । ସରଳ ଅବସ୍ଥାରେ ଯେଉଁ ବିଦ୍ରୂପ ବା ବ୍ୟଙ୍ଗର ରୂପ ତାହା ଦୁଇ ଜଣଙ୍କ ମଧ୍ୟରେ କଥାର ଆଦାନ ପ୍ରଦାନ । ଏହି ଶ୍ରେଣୀୟ ବିଦ୍ରୂପରେ ଜଣେ ଜଣଙ୍କୁ ଲକ୍ଷ୍ୟକରି ଯାହା କହେ, ତାହାର ଅର୍ଥ ଇପ୍ସିତ ବ୍ୟକ୍ତି ପକ୍ଷରେ ସମଗ୍ର ଭାବରେ ବୁଝା ନ ଗଲେ ମଧ୍ୟ; କାଳର ପରିମାଣରେ ଅଭିମାନ ଓ ଅପମାନ ଅର୍ଥରେ ସୂଚିତ ହୁଏ । ନାଟକମୂଳକ ବିଦ୍ରୂପ ଅଭିନେତା ଓ ଦର୍ଶକ ମଧ୍ୟରେ କେତେକ ଅବସ୍ଥାରେ ଜାତ ହୁଏ । ଅଭିନେତାର ଅଜ୍ଞତା, ଏବଂ ଦର୍ଶକର ଏହି ଅଜ୍ଞତାର ଆବିଷ୍କାର ସମୟେ ସମୟେ ଏହା କେବଳ ଦୁଇ ଅଭିନେତା ଓ ଦର୍ଶକଙ୍କ ମଧ୍ୟରେ ଆବଦ୍ଧ ହୋଇ ନ ପାରେ । ନିୟତିମୂଳକ ବିଦ୍ରୂପର ଯେଉଁ ସ୍ୱରୂପ, ତାହା ବାସ୍ତବିକ ବ୍ୟକ୍ତିର ସଦା ଦୁଃଖ । ନୈରାଶ୍ୟ ବିଡ଼ମ୍ବନା-ଜନିତ ଅସହାୟତା । ଏ ସମସ୍ତ ବିଦ୍ରୂପାତ୍ମକ ବିଶ୍ଳେଷଣ ମୂଳରେ କବି ବା ସାହିତ୍ୟିକର ଅନ୍ତରାତ୍ମାର ଅନୁଭବ ବା ଗୋଟାଏ ରୂପ ଥାଏ । ନିୟତିମୂଳକ ବିଦ୍ରୂପରେ ବ୍ୟକ୍ତି ଜୀବନର ଦୁଃଖ ଅବସାଦ ପାଇଁ ପରିସ୍ଥିତି ଏବଂ ନିଜର ଅଦୃଷ୍ଟକୁ ନିନ୍ଦା କରିଥାଏ । ବିଦ୍ରୂପାତ୍ମକ ବିବୃତି ମାନସ ରାଜ୍ୟର ପ୍ରତିକୃତି । କେବଳ ସରଳ ଧରଣର ବିଦ୍ରୂପ ହିଁ ସାହିତ୍ୟରେ ବିଶେଷ ସ୍ଥାନ ପାଇଥାଏ । ମାତ୍ର ନାଟକୀୟ ବିଦ୍ରୂପ ଏବଂ ନିୟତି ବିଦ୍ରୂପ ନାଟକରେ ଲକ୍ଷିତ ହୋଇଥାଏ ।

ହାସ୍ୟରସ ପରିବେଷଣକାରୀ କବି ବା ବ୍ୟଙ୍ଗ ବିଦ୍ରୂପକାରୀ ସାହିତ୍ୟିକର ମାନସିକ ରାଜ୍ୟ ପର୍ଯ୍ୟବେକ୍ଷଣ ଯୋଗ୍ୟ । ଏପରି

ସାହିତ୍ୟିକର ଦୃଷ୍ଟିକୋଣ ଏବଂ ଉଦ୍ଦେଶ୍ୟ କଅଣ ? ଏବଂ ଲେଖକର କେଉଁ ଭାବ ଓ ଚିନ୍ତା ବିଦ୍ରୂପରେ କିପରି ଅଧିକୃତ ହୋଇଥାଏ ଏବଂ ଏହି ପ୍ରତିକ୍ରିୟାର ପରିଣତି କଅଣ ହୁଏ ? ବିଦ୍ରୂପ ଓ ବ୍ୟଙ୍ଗାତ୍ମକ ରଚନାରେ ପ୍ରତିଫଳିତ ବା ପ୍ରତିବିମ୍ବିତ ଆତ୍ମାର ଚିହ୍ନ ଦେଖିବାକୁ ମିଳେ । ଅବଶ୍ୟ କେତେକଙ୍କ ମତରେ ବ୍ୟଙ୍ଗ ବିଦ୍ରୂପ କ୍ରିୟା ମୂଳରେ ବ୍ୟକ୍ତିଗତ ଶତ୍ରୁତାର ସଙ୍କେତ ଥାଏ । କାରଣ ବିଦ୍ରୂପଚ୍ଛଳରେ ମଣିଷମାନର ଅନ୍ୟପ୍ରତି ଅର୍ଥାତ୍ ସାହିତ୍ୟିକ ମନ ଈର୍ଷା, ବିଦ୍ୱେଷ, ଅନ୍ୟପ୍ରତି ପ୍ରକାଶ ପାଇଥାଏ । ସ୍ତବକ ବିଦ୍ରୂପ କରିବା କିଂବା କାହାର ଅସ୍ୱାଭାବିକ ନିର୍ବୋଧତା ଦେଖି ତ ! ସମାଲୋଚନା କରିବା ଏକ ଅପ୍ରିୟ ଓ ନିଷ୍ଠୁର କାର୍ଯ୍ୟ । ମାତ୍ର ଏହି ନିଷ୍ଠୁରତା ଓ ଅପ୍ରିୟତା ତଳେ ସଂସ୍କାର ବା ସଜାଡ଼ିବାର ମନୋବୃତ୍ତି ଥାଏ । ତେଣୁ ହାସ୍ୟରସିକ ବ୍ୟଙ୍ଗକାରୀ ଲେଖକମାନଙ୍କର ନିପୁଣତା ଅର୍ଜନ ଏକ ମାମୁଲିକଥା । ମାତ୍ର ସାହିତ୍ୟ ଜଗତରେ ଏ ସମସ୍ତଙ୍କର ଅଭିସନ୍ଧି ଅପେକ୍ଷା ଅଭିଳାସ ଥାଏ । ଜଣକୁ ସଜାଡ଼ିବା ଓ ଗୋଟିଏ ଅନୁଷ୍ଠାନ ରକ୍ଷା କରିବା ଭାର କେବଳ ସାହିତ୍ୟିକର ଏବଂ ସେହି ଦାୟିତ୍ୱ ତୁଲାଇବା ପାଇଁ ସେ ଯେଉଁ ଅସ୍ତ୍ର ବ୍ୟବହାର କରେ ତାହା ମାରାତ୍ମକ ଓ ଶାଣିତ ହୋଇପାରେ । ମାତ୍ର ସେଥିରେ ଆଘାତ ଅପେକ୍ଷା ହିତର ସମ୍ଭାବନା ଥାଏ । ବିଦ୍ରୂପ ଧ୍ୱଂସମୂଳକ ସମାଲୋଚନାର ଏକ ଯନ୍ତ୍ରସଦୃଶ । ଅବଶ୍ୟ ବ୍ୟକ୍ତିଗତ ଜୀବନର ଅସ୍ୱାଭାବିକତାକୁ କେନ୍ଦ୍ରକରି ସାହିତ୍ୟରେ କଳଙ୍କକଲ୍ଲ ଓ ଝଡ଼ଝଞ୍ଜା ସୃଷ୍ଟି ହୁଏ । ବ୍ୟକ୍ତି ଓ ବ୍ୟକ୍ତିର ସ୍ୱତନ୍ତ୍ର କର୍ମ ଅପେକ୍ଷା ଗୋଷ୍ଠୀର ନୀତି ଓ ନିୟମ ବିରୁଦ୍ଧରେ ବିଦ୍ରୂପ ପ୍ରୟୋଗ ହେବା ଉଚିତ । ଯେଉଁଠାରେ ବ୍ୟକ୍ତି ବିରୁଦ୍ଧରେ ବିଦ୍ରୂପ ଓ ବ୍ୟଙ୍ଗ ଉଦ୍ଦିଷ୍ଟ ସେହିଠାରେ ବ୍ୟଙ୍ଗ ବିଦ୍ରୂପ ଉଦ୍ଦେଶ୍ୟ ନହୋଇ କେବଳ ଉପାୟ ହୋଇ ପଡ଼ନ୍ତି । ମାତ୍ର ବିଦ୍ରୂପ ହେଉଛି ଏକ ରକମ ଚେଷ୍ଟା

ସମାଲୋଚନା ବା ଗୋଷ୍ଠୀଗତ ତର୍କ ନୁହାନ୍ତି । ମିଥ୍ୟାର ଅପଚୟ ଓ ସତ୍ୟର ପ୍ରକାଶ ଏହି କାହାଣିର ଲକ୍ଷ୍ୟ। କୌଣସି ବ୍ୟକ୍ତିକୁ ଦବେଇଦେବା ପାଇଁ ବିଦ୍ରୂପ ଯଥେଷ୍ଟ ହୋଇପାରେ । ମାତ୍ର ଏହି କ୍ରିୟାର ସତ୍ୟ ବାହନ ହେବା ଉଚିତ । ପ୍ରକୃତ ବିଦ୍ରୂପ ହେଉଛି ଏକ ବିଜୟୀ ସୈନିକ ବିଦ୍ରୂପକାରୀ ବ୍ୟକ୍ତିଗତ ଭାବରେ ଶରୀର ବା ଷଣ୍ଢଭି ଶୁଣାଇ ଦେଇ ନ ଥାଏ, ବରଂ ସତ୍ୟ ଓ ଅସତ୍ୟ ମଧ୍ୟର ସୀମା ରେଖା ଟାଣି ଦେଇ ସେ ବ୍ୟକ୍ତିର ଚୈତନ୍ୟକୁ ନିବେଦନ ଜଣାଏ । ବିଦ୍ରୂପ ପ୍ରଥା ନିଷ୍ଠୁର ହୋଇପାରେ, ମାତ୍ର ଏହାର ଲକ୍ଷ୍ୟ ଅତି ଶୁଭ ।

ବାକ୍ୟରେ ଦ୍ୱିଧାତ୍ମକ ଅର୍ଥ ବିଦ୍ରୂପରେ ମର୍ମ ହୋଇପାରେ, ମାତ୍ର ତାହାର ଉଦ୍ଦେଶ୍ୟ ହେଉଛି ଯଥାର୍ଥ ସଂସ୍କାର । ଯଦି କେବେ କେହି କିଛି ଅପରାଧ କରେ ବିଦ୍ରୂପକାରୀ ତାହାର ସେହି ଦୋଷଦୁର୍ବଳତା ଦୂର କରିବା ଅପେକ୍ଷା ଯେବେ ତାକୁ ଘୃଣା କରେ, ତେବେ ବିଦ୍ରୂପର ଯଥାର୍ଥ ମୂଲ୍ୟ ରହେ ନାହିଁ । ବିଦ୍ରୂପକାରୀ ପ୍ରତ୍ୟକ୍ଷ ଭାବରେ ଭଲ, ମନ୍ଦ, ଦୋଷ ନିର୍ଦ୍ଦୋଷ କହି ନ ଥାଏ । ସେ ବରଂ ସୂକ୍ଷ୍ମ ଉପାୟରେ ସୂଚନା ଦେଇଥାଏ ମାତ୍ର । ଭାଷାରେ କର୍କଶତା ପ୍ରକାଶ ପାଏ ମାତ୍ର ତାର ଅନ୍ତର କର୍କଶ ନୁହେଁ । ଯେପରି ଅବଗୁଣ୍ଠନ ତଳେ ବିଦ୍ରୂପ ବ୍ୟକ୍ତି ଓ ସମାଜର ଗ୍ଲାନି ବିରୁଦ୍ଧରେ ଉଦ୍ଦିଷ୍ଟ । ନିର୍ବୋଧ, ମୂର୍ଖମାନେ ଯେପରି ଆଚରଣ ଦେଖାନ୍ତି, ବ୍ୟଙ୍ଗ ବିଦ୍ରୂପକାରୀ ଲେଖକମାନେ ହିଁ ତାହା ଧରାଇ ଦିଅନ୍ତି । ଯେ କୌଣସି ସାହିତ୍ୟର ଇତିହାସରେ କିବା ଆମ ଓଡ଼ିଆ ସାହିତ୍ୟ ଇତିହାସରେ ବ୍ୟଙ୍ଗ, ବିଦ୍ରୂପ ଦ୍ୱିଧା ରୂପ ଧାରଣ କରିଅଛି । ଜୀବନରେ ବହୁଦୋଷ, ଦୁର୍ବଳତା, ବ୍ୟତିକ୍ରମ ଥାଏ । ତାହାସବୁ ଜଣେ ଜଣେ ପ୍ରତିଭାଶାଳୀ ବ୍ୟଙ୍ଗକାରୀ ଲେଖକର ଲେଖନୀ ଶିଖାରେ ଯେପରି ଜଳି ପୋଡ଼ିଯାଏ। ବ୍ୟଙ୍ଗ ବିଦ୍ରୂପରେ ହାସ୍ୟ ନ ଥାଏ

କି ଏଥିରେ ଚପଳତା ନ ଥାଏ । ବରଂ ଏହା ହାସ୍ୟର ଏକ କର୍କଶ ସ୍ୱରୂପ । ଜଣେ ଅସ୍ତ୍ର ଶସ୍ତ୍ର ସଜ୍ଜିତ ପରାକ୍ରମଶାଳୀ ସୈନିକ କୌଣସି ଶିଶୁ ସହିତ ଯୁଦ୍ଧ ଆଚରଣ କରିବା ଯେପରି ଅନ୍ତରଞ୍ଜନ, ପ୍ରକୃତ ପକ୍ଷେ ପ୍ରତିଭାଶାଳୀ ଲେଖକର ବାକ୍ୟବାଣ ନିର୍ବୋଧ ଓ ମୂର୍ଖମାନଙ୍କ ପକ୍ଷେ ସେହିପରି ଜଣାଯାଏ । ମାତ୍ର ଏ ସମସ୍ତ ପୃଷ୍ଠ ଭୂମିରେ ସତର୍କତା ଏକାନ୍ତ ଆବଶ୍ୟକ । ବ୍ୟଙ୍ଗବିଦ୍ରୂପକାରୀ ସମ୍ମୁଖରେ ଦୁଇଟି ପନ୍ଥା ଜୟ ଆଉ ପରାଜୟ । ତେଣୁ ଲେଖକ ପ୍ରଥମରୁ ପ୍ରସ୍ତୁତ ହେବା ଉଚିତ । ଯେପରିକି ତାହାର ବିଦ୍ରୂପରେ ଲକ୍ଷ୍ୟ କଳୁଷିତ ହେବନାହିଁ । ସାହିତ୍ୟରେ ବ୍ୟଙ୍ଗ ବିଦ୍ରୂପର ଇତିହାସ ହେଉଛି ସତ୍ୟଂଶିବ ସୌନ୍ଦର୍ଯ୍ୟ ନାମରେ ସଙ୍କଳ୍ପ ଗ୍ରହଣ । ସାହିତ୍ୟରେ ଦ୍ୱିବିଧ ଉପାୟରେ ବ୍ୟଙ୍ଗ ବିଦ୍ରୂପ ପ୍ରୟୋଗ କରାଯାଇପାରେ । ପ୍ରଥମତଃ ଭବିଷ୍ୟତ ଦୃଷ୍ଟିରୁ ବର୍ତ୍ତମାନର ସମାଲୋଚନା ଏବଂ ଦ୍ୱିତୀୟତଃ ବର୍ତ୍ତମାନ ପାଇଁ କେବଳ ବର୍ତ୍ତମାନର ସମାଲୋଚନା ବା ବ୍ୟକ୍ତିର ନିନ୍ଦା ରଟନା । ପ୍ରଥମ ଶ୍ରେଣୀରେ ସଂସ୍କାରର ଅଭିଳାଷ ଥାଏ । ମାତ୍ର ଦ୍ୱିତୀୟ ଶ୍ରେଣୀରେ କେବଳ କୁତ୍ସାରଟନା ହିଁ ସାର ହୁଏ । କାନ୍ତ କବିଙ୍କ ରଚନାରେ ଉଭୟ ଦୁର୍ନୀତିଗ୍ରସ୍ତ ସାହିତ୍ୟିକ ସମାଜର ନିନ୍ଦା ଏବଂ ଭବିଷ୍ୟତ ପାଇଁ ଆଶା ଅଭିବ୍ୟକ୍ତ କରାଯାଇଛି ।

# ଓଡ଼ିଆ ଶିଶୁ ସାହିତ୍ୟ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଓଡ଼ିଆ ସାହିତ୍ୟର ସମ୍ପ୍ରସାରଣଶୀଳ ବିକାଶ ଏବଂ ବିବର୍ତ୍ତନ କ୍ଷେତ୍ରରେ ଏକ ଉତ୍କର୍ଷୋନ୍ମୁଖ ଯୁଗ ରୂପେ ଅଭିହିତ । ଏହି ବିକାଶ ଏବଂ ପ୍ରସାରରେ ଯେଉଁ ନୂତନ ନୂତନ ତଥ୍ୟ ଏବଂ କର୍ମପ୍ରେରଣାର ପ୍ରତିଧ୍ୱନି ଶୁଣାଯାଏ, ସେହି କର୍ମପ୍ରେରଣାର ଆବିଷ୍କାରହିଁ ସାହିତ୍ୟିକ-ନିଷ୍ଠା-ସାପେକ୍ଷ । ଏହି କର୍ମପ୍ରେରଣାର ମୂଳଧାରା ନିଦର୍ଶନ ଏକ ବିରାଟ ବ୍ୟାପାର । ଏହି ଅର୍ଦ୍ଧଶତାବ୍ଦୀର ଇତିହାସ ବହୁ ଉପାଦାନ ସୃଷ୍ଟି ତଥା ପ୍ରୟୋଗ-ବୈଶିଷ୍ଟ୍ୟ-ବିଜଡ଼ିତ । କେତେ ଲେଖନୀର ମସୀ କେତେ ତୁଳୀର ମୋହାଂଜନ, ଐଶ୍ୱର୍ଯ୍ୟ ଓ ବିଳାସ ଯୁଗ ସାହିତ୍ୟ ବିଳାସ ଛଟାରେ ବେଶ୍ ଉପଲବ୍ଧ ଏବଂ ପରିସ୍ଫୁଟ । ସାହିତ୍ୟର ପ୍ରାଚୀନଧାରା ପରିବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଆଭିମୁଖ୍ୟ ସୃଷ୍ଟି ହୋଇଥିଲା । କର୍ମ ପରମ୍ପରା ଆଦର୍ଶଗତ ବୈଭବ ଦ୍ୱାରା ସାହିତ୍ୟିକ ଆବିଷ୍କାର କ୍ରିୟା ବର୍ଦ୍ଧନ ପାଇଁ ଅଗ୍ରସର ହୋଇ ପାରିଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଆ ସାହିତ୍ୟରେ ଯେଉଁ ବିରାଟ ପରିବର୍ତ୍ତନର ସୂତ୍ରପାତ ହେଲା ସେହି ପରିବର୍ତ୍ତନ-ପ୍ରକ୍ରିୟାରେ ଆମ ସମାଜର ଗୋଟିଏ ନିର୍ଦ୍ଦିଷ୍ଟ ବୟସର ପାଠକମାନଙ୍କରି ମନୋରଞ୍ଜନସମ୍ମତ ଏକ ବିଚିତ୍ର କଳ୍ପନାଧାରା, ଚିନ୍ତା ପ୍ରବାହ ଏବଂ ସମୁଚିତ ଆଦର୍ଶର ଆଭିମୁଖ୍ୟକୁ ପ୍ରଶ୍ରୟ ଦିଆଗଲା । ଏହି ନିର୍ଦ୍ଦିଷ୍ଟ ବୟସ ବିଶିଷ୍ଟ ପାଠକମାନଙ୍କର ସଂଜ୍ଞା ହେଉଛି ବୁଦ୍ଧିର କୋମଳତା, ଜ୍ଞାନର ସରଳତା, ଆଚରଣରେ ପ୍ରଖରତା ଏବଂ ସୃଷ୍ଟି ପ୍ରତିକ୍ରିୟା-ଶୀଳତା । ଏହି ସମସ୍ତ ଗୁଣ ଏବଂ ଆଭିମୁଖ୍ୟମଣ୍ଡିତ ଯେଉଁ ଶିଶୁ ସମାଜ,

ସେହି ଶିଶୁସମାଜର ବହୁଦିନର ଅଭାବକୁ ଦୂରକରି ଏକ ସୁସ୍ଥ, ସରଳ ମନୋବିଜ୍ଞାନସମ୍ମତ ଏବଂ ପ୍ରାଣସ୍ପର୍ଶୀ ସାହିତ୍ୟ ଗଠିତ ହେଲା ଯାହାକୁ ଆମ୍ଭେମାନେ ଶିଶୁସାହିତ୍ୟ ନାମରେ ଅଭିହିତ କରି ପାରୁଁ । ଅବଶ୍ୟ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶିଶୁସାହିତ୍ୟର ଯେ ଅଭାବ ଥିଲା ତାହା ନୁହେଁ । କାରଣ ଆମ ପ୍ରାଚୀନ ଓଡ଼ିଆ ସାହିତ୍ୟର ପଦ୍ୟ ପରମ୍ପରାରେ ଆମ୍ଭେମାନେ ବହୁ ପଦ୍ୟ ରଚନାର ସନ୍ଧାନ ପାଉଁ, ଯାହାସବୁ ଶିଶୁର ମନପ୍ରାଣ ଅଧିକାର କରି ଶିଶୁକୁ ବିହ୍ୱଳ କରି ଦେଇଥାଏ । ଆମ ସାହିତ୍ୟର କୋଇଲି, ଚଉତିଶା, ପଦାବଳୀ ଏଠାରେ ଉଦାହରଣ ସ୍ୱରୂପ ଉଦ୍ଧାର କରାଯାଇପାରେ । ଓଡ଼ିଶାର ପୁରପଲ୍ଲୀରେ ସହସ୍ର ସହସ୍ର ସହସ୍ର ଶିଶୁକଣ୍ଠରେ 'କେଶବ କୋଇଲି'ର ଅମୃତ ପଦାବଳୀ ଝଂକୃତ ହୋଇଥାଏ । ସନ୍ତାନର ବିଚ୍ଛେଦରେ ସ୍ନେହଶୀଳା ଜନନୀର ହୃଦୟରୁ ଯେଉଁ ଶୋକୋଚ୍ଛ୍ୱାସ ନିର୍ଗତ ହୁଏ, ତାହା ବାସ୍ତବିକ ଜନନୀ ଏବଂ ସନ୍ତାନ ଉଭୟ ପକ୍ଷରେ କରୁଣ ଏବଂ ଦୁଃଖାବହ । ଜନନୀର ଶୋଚନା, ଅଶ୍ରୁ ବେଦନା ସ୍ମରଣ କରି କେଉଁ ଶିଶୁର ହୃଦୟ ଏକ ଅଜ୍ଞାତ ବ୍ୟଥାରେ ମଥିତ ହୋଇ ନ ଥାଏ ? ଆମ ପ୍ରାଚୀନ ଓଡ଼ିଆ ସାହିତ୍ୟରେ 'କୋଇଲି' ସାହିତ୍ୟ ଏତାଦୃଶ ଶିଶୁମନଲାଗି ରଚନା । ଅବଶ୍ୟ 'କୋଇଲି'ର ବରେଣ୍ୟ ସ୍ରଷ୍ଟାଗଣ ନିଜ ନିଜ ଲେଖନୀ ଚାଳନ ସମୟରେ ଶିଶୁମାନ-ଙ୍କର ମନୋରଞ୍ଜନ ପ୍ରତି ଦୃଷ୍ଟି ଦେଇ ଲେଖିଥିଲେ କି ନାହିଁ, ତାହା ଜାଣିବାର ଉପାୟ ନାହିଁ । ସେହିପରି 'ଗୋପୀଭାଷା', 'ଭାଗବତ', 'ମନବୋଧ ଚଉତିଶା' ପ୍ରଭୃତି ରଚନାର ଉପାଦେୟତା ଓ ଶିଶୁପ୍ରିୟତା ଅବଶ୍ୟ ସ୍ୱୀକୃତ । ଓଡ଼ିଶାର ଅଧିକାଂଶ ପଲ୍ଲୀବିଦ୍ୟାଳୟମାନଙ୍କରେ ଶିଶୁବିଦ୍ୟାର୍ଥୀମାନଙ୍କର ସାହିତ୍ୟ ମଧ୍ୟରେ କୋଇଲି, ଚଉତିଶା ପ୍ରଭୃତି ଗୃହୀତ ହୋଇଥାଏ । ପ୍ରାଚୀନକାଳର ଏତାଦୃଶ ଶିଶୁ-ଅଭିମୁଖୀ ରଚନାମାନଙ୍କରେ ଶିଶୁମନର ନିର୍ମଳ ପ୍ରତିଫଳନ ଅବଶ୍ୟ ଦେଖାଯାଏ

ନାହିଁ । ଶିଶୁମନର ଯେଉଁ ନିର୍ମଳ ପ୍ରତିଫଳନ ତାହା ହିଁ ଆଧୁନିକ ବୈଜ୍ଞାନିକମାନଙ୍କର ବିଶ୍ଳେଷଣରେ 'ମନୋବିଜ୍ଞାନ'ର ନାମ ଗ୍ରହଣ କରିଥାଏ । ଓଡ଼ିଆ ସାହିତ୍ୟରେ ଶିଶୁସାହିତ୍ୟର ବିକାଶରେ ଦ୍ୱିବିଧ ପର୍ଯ୍ୟାୟ ଦୃଷ୍ଟ ସ୍ୱୀକୃତ । ପ୍ରଥମ ପର୍ଯ୍ୟାୟରେ କୋଇଲି ଚଉତିଶା ପ୍ରଭୃତି ସରଳ ରଚନାବଳୀ ଗୃହୀତ, ଦ୍ୱିତୀୟ ପର୍ଯ୍ୟାୟରେ ଅର୍ଥାତ୍ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆଧୁନିକ ଲେଖକମାନଙ୍କର ମନୋବିଜ୍ଞାନ ସମ୍ବଳିତ ରଚନା ହିଁ ଅନ୍ତର୍ଭୁକ୍ତ ହୋଇଥାଏ । ଶିଶୁମନୋବିଜ୍ଞାନ ସମର୍ଥିତ ସାହିତ୍ୟରେ ଶିଶୁର ହୃଦ୍‌ବୋଧତା, ରୁଚି, ବାସନା ଏବଂ ଶିଶୁପ୍ରାଣର ନୈସର୍ଗିକ ବିକୃତି ପ୍ରତି ସୂକ୍ଷ୍ମଦୃଷ୍ଟି ଦିଆଯାଏ । ଏହା ହିଁ ହେଲା ଆଧୁନିକ ଶିଶୁସାହିତ୍ୟିକମାନଙ୍କର ସର୍ବପ୍ରଥମ ଅନୁଭୂତି ବା ଯୋଗ୍ୟତା । ଶିଶୁର ସରଳ ତରଳ ହୃଦୟର ବ୍ୟଥା ଓ ବେଦନାର ତାଡ଼ନାରେ ଯେଉଁ କବି ବା ଗାଳ୍ପିକର ଲେଖନୀ ମୁଖର ନୁହେଁ, ସେହି କବି ବା ଗାଳ୍ପିକର ଶିଶୁସାହିତ୍ୟ ରଚନା ପାଇଁ ଯଥାର୍ଥ ଦକ୍ଷତା ଅଛି କି ନାହିଁ, ତାହା ବିଚାରସାପେକ୍ଷ ।

ଓଡ଼ିଆ ସାହିତ୍ୟରେ ଶିଶୁମନର ବିକାଶ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉଲ୍ଲେଖଯୋଗ୍ୟ ଏବଂ ଏହି ପ୍ରଥମାର୍ଦ୍ଧରେ ବହୁ ଶିଶୁ-ସାହିତ୍ୟିକଙ୍କର ଆବିର୍ଭାବ ହୋଇଅଛି । ଏହି ନବୀକରଣ ପର୍ଯ୍ୟାୟର ପ୍ରଯୋଜକ ଭକ୍ତକବି ମଧୁସୂଦନ ରାଓ । ଓଡ଼ିଆ ଶିଶୁସାହିତ୍ୟର ସଂପ୍ରସାରଣ ଏବଂ ବିକାଶ ପାଇଁ ଭକ୍ତକବି ମଧୁସୂଦନଙ୍କର ଦାନ ବିପୁଳ ଏବଂ ଅଲଂଘ୍ୟ । ବହୁବିଧ ଶିଶୁଗୀତିକାଠାରୁ ଆରମ୍ଭକରି ଋତୁବର୍ଣ୍ଣନା ଆଦି ଶିଶୁ-ପ୍ରାଣସଙ୍ଗତ ପ୍ରସଙ୍ଗ ବର୍ଣ୍ଣନାରେ ଭକ୍ତ କବିଙ୍କର ଲେଖନୀ କୃପାସିନ୍ଧୁ ଆଖ୍ୟା ଲାଭ କରିଥିଲା । ମଧୁସୂଦନଙ୍କର ଶିଶୁ ଉପଯୋଗୀ

ଲେଖାମାନଙ୍କରେ ଆଦର୍ଶର ପବିତ୍ରତା, ବସ୍ତୁରବୁଦ୍ଧିର ନିର୍ମଳତା, ଶିଶୁହୃଦୟର ପ୍ରକୃତ ସରଳତା ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦତ୍ତ ହୋଇଅଛି । ତା ପରେ ନନ୍ଦକିଶୋର ବଳ ପ୍ରଭୃତି ସାହିତ୍ୟର ଏହି ବିଶିଷ୍ଟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

ଏତଦ୍‌ବ୍ୟତୀତ ବହୁ ଶିଶୁସାହିତ୍ୟ ଲେଖକ ଏହି ଯୁଗରେ ଲେଖନୀ ଧାରଣ କରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ତିରିଶ ବର୍ଷରେ ଶିଶୁ ସାହିତ୍ୟର ଯେଉଁ ଅଭ୍ୟୁଦୟ ପରିଲକ୍ଷିତ ହେଲା, ତାହା ମୁଖ୍ୟତଃ ପଦ୍ୟଧର୍ମୀ । କିନ୍ତୁ ପରବର୍ତ୍ତୀକାଳରେ ବିଶେଷତଃ ୧୯୩୦ ମସିହାର ଅବ୍ୟବହିତ ପରେ ଶିଶୁ ସାହିତ୍ୟର ବିକାଶ ଗଦ୍ୟଧର୍ମୀ ହେଲା । ସଂସ୍କୃତ ସାହିତ୍ୟର 'ଜାତକ', 'ଗଳ୍ପଗୁଚ୍ଛ', 'ପଞ୍ଚତନ୍ତ୍ର', 'ହିତୋପଦେଶ', 'ମିତ୍ରଲାଭ' ଠାରୁ ଆରମ୍ଭକରି ଦେଶ ବିଦେଶର ଲୋକକଥା, ପୁରାଣକଥା ପର୍ଯ୍ୟନ୍ତ ବିଭିନ୍ନ କଥାସାହିତ୍ୟ ଶିଶୁପାଠ୍ୟକ୍ରମରେ ସ୍ଥାନ ପାଇଥିଲା ।

୧୯୩୦ ମସିହା ଓଡ଼ିଆ ଶିଶୁସାହିତ୍ୟ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ସମୟ । କାରଣ ଏହି ସମୟରେ ହିଁ ଶିଶୁ-ସାହିତ୍ୟର ପ୍ରଚାର ଏବଂ ବିକାଶ ନିମନ୍ତେ ବହୁ ସକ୍ରିୟ ସାହିତ୍ୟିକଙ୍କ ଦ୍ୱାରା ପ୍ରଚେଷ୍ଟା ଆରମ୍ଭ କରାଯାଇଥିଲା । ସ୍ୱର୍ଗୀୟ ବାଳକୃଷ୍ଣ କରଙ୍କ ଉଦ୍ୟମରେ ଏବଂ ସଂପା-ଦନାରେ ହିଁ ଶିଶୁ ଉପଯୋଗୀ ଭାଷା, ଭାବ ତଥା ରୁଚିଅନୁକୂଳ, ଛବିଳ ଏବଂ କୌତୁହଳପୂର୍ଣ୍ଣ "ଜହ୍ନମାମୁଁ" ପତ୍ରିକା ପ୍ରକାଶିତ ହେଲା । ଅବଶ୍ୟ ଓଡ଼ିଆ ଶିଶୁସାହିତ୍ୟର ସାମୟିକ ପତ୍ରିକା କ୍ଷେତ୍ରରେ "ପଞ୍ଚାମୃତ"ର ସ୍ଥାନ ସ୍ୱୀକାର୍ଯ୍ୟ । ତେବେ "ଜହ୍ନମାମୁଁ" ବହୁ ବର୍ଷଧରି ଓଡ଼ିଆ ଶିଶୁସମାଜର ସର୍ବୋତ୍ତମ ପ୍ରିୟ ପତ୍ରିକା ରୂପେ ପ୍ରତିଷ୍ଠାଲାଭ କରିଥିଲା । ନାନା ଦେଶର ଗପ, କାହାଣୀ, ସୁନ୍ଦର ସୁନ୍ଦର ମନଲୋଭା ଶିଶୁରଞ୍ଜନ ପଦ୍ୟ, ବିଜ୍ଞାନ

ଜଗତର ହାଲଚାଲ, ଗୋଲକଧନ୍ଦା, ହସଖେଳ—ଏଠରେ ବଡ଼ଲୋକ ବସ୍ତରେ "ଜହ୍ନମାମୁଁ" ଶ୍ରାମଣ୍ଡିତ ହୋଇ ଉତ୍କଳର ଲକ୍ଷ ଲକ୍ଷ ବାଳକ ବାଳିକାଙ୍କର ଚିତ୍ତବିନୋଦନ ତଥା ସାହିତ୍ୟିକ ଗଠନ ପିପାସା ତୃପ୍ତ କରିଥିଲା । "ଜହ୍ନମାମୁଁ" ଶିଶୁପତ୍ରପତ୍ରିକା ମହଲରେ ଯେ ଏକ ତୁଙ୍ଗ ଆଦର୍ଶ ପ୍ରତିଷ୍ଠା କରିଥିଲା, ତାହାର ଏକମାତ୍ର କାରଣ ହେଉଛି ଶିଶୁସାହିତ୍ୟପ୍ରେମୀ ତଥା ସୁସାହିତ୍ୟିକ ବାଳକୃଷ୍ଣ ବାବୁଙ୍କର ଅକ୍ଳାନ୍ତ ପରିଶ୍ରମ ଏବଂ ସାରସ୍ୱତ ନିଷ୍ଠା । ସେତେବେଳେ ଏହା ମାସିକ ଭାବରେ ପ୍ରକାଶିତ ହେଉଥିଲା । "ଜହ୍ନମାମୁଁ" ଓଡ଼ିଶାରେ ବହୁ ଶିଶୁସାହିତ୍ୟ-ପ୍ରେମୀ ଲେଖକଲେଖିକା ସୃଷ୍ଟି ନିମନ୍ତେ ସୁଦୃଢ଼ ଭିତ୍ତି ସ୍ଥାପନ କରିଥିଲା । ସେତେବେଳେ ଅଧିକାଂଶ ଲେଖକ ଓଡ଼ିଆ ସାହିତ୍ୟର ଏହି ନୂତନ ପ୍ରବର୍ତ୍ତିତ ଆଭିମୁଖ୍ୟ ଲାଗି "ଜହ୍ନମାମୁଁ" ପତ୍ରିକା ଜରିଆରେ ଉଦ୍ୟମ ଚଳାଇଥିଲେ । "ଜହ୍ନମାମୁଁ"ର ନିୟମିତ ଲେଖକମାନଙ୍କ ମଧ୍ୟରେ ଧନେଶ୍ୱର ଶତପଥୀ, ଗୌରଚନ୍ଦ୍ର ରାଉତ, ଉପେନ୍ଦ୍ର ତ୍ରିପାଠୀ, କୁବେର ଦଳାଇ, ଗୋପାଳ ଚନ୍ଦ୍ର ମିଶ୍ର, କୁଞ୍ଜବିହାରୀ ଦାସ, ଜଗନ୍ନାଥ ମହାପାତ୍ର, କୈଳାସଚନ୍ଦ୍ର ତ୍ରିପାଠୀ, ସତ୍ୟାନନ୍ଦ ବେହୁରା, ଗୋଦାବରୀଶ ମହାପାତ୍ର, ବଂଶୀଧର ସାମନ୍ତରାୟ, ରତ୍ନାକର ମହାପାତ୍ର, ଭଗବାନ ପତି, ରାମ ପ୍ରସାଦ ସିଂହ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ । ବାଳକୃଷ୍ଣ କରଙ୍କ ସଂପାଦିତ ଶିଶୁ-ସାହିତ୍ୟ ପତ୍ରିକା 'ଜହ୍ନମାମୁଁ' ଏ ଦେଶର ସାହିତ୍ୟରେ ଏକ ଉନ୍ନତ ମାନଦଣ୍ଡ ସୃଷ୍ଟି କରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଶିଶୁ ସାହିତ୍ୟ ପତ୍ରପତ୍ରିକା ପ୍ରକାଶନ କ୍ଷେତ୍ରରେ "ମଧୁକୋଷ"ର ଦାନ ମଧ୍ୟ ଉପେକ୍ଷିତ ହୋଇ ନ ପାରେ । "ଜହ୍ନମାମୁଁ" ଅପେକ୍ଷା ଆଉଟିକିଏ ଅଧିକ ଉଚ୍ଚ ଦରର ଶିଶୁସାହିତ୍ୟ ପତ୍ରିକା ପ୍ରକାଶପାଇଁ ବାଳକୃଷ୍ଣବାବୁ ବହୁ ଚିନ୍ତା କରି "ମଧୁକୋଷ"ର ଭିତ୍ତିସ୍ଥାପନ କଲେ । ବୈଜ୍ଞାନିକ ଯୁଗରେ କୋମଳମତି ବାଳକବାଳିକାମାନଙ୍କୁ ବିଜ୍ଞାନର ବହୁବିଧ

ଆବିଷ୍କାର ଏବଂ ଉଦ୍‌ଭାବନ ସହିତ ପରିଚିତ କରାଇବା ପ୍ରତ୍ୟେକ ସାହିତ୍ୟିକର ପରମ କର୍ତ୍ତବ୍ୟ ବୋଲି ସେତେବେଳେ ଅନୁଭୂତ ହେଲା। ବାଳକୃଷ୍ଣବାବୁ ବହୁ ବର୍ଷର ଅଭାବ ଦୂର କରି ଓଡ଼ିଆ ସାହିତ୍ୟକ୍ଷେତ୍ରରେ "ମଧୁକୋଷ" ପତ୍ରିକାର ଶୁଭାରମ୍ଭ କଲେ। 'ଜହ୍ନମାମୁଁ' ଏବଂ 'ମଧୁକୋଷ" ପତ୍ରିକା ଦ୍ୱୟ ଓଡ଼ିଶାର ଶିଶୁ ସମାଜରେ ଆଦରର ବସ୍ତୁ ଏବଂ ପାଠ୍ୟ କ୍ରମର ସ୍ତର ସହଚର ବୋଲି ବୁଝିବାକୁ ହେବ। ୧୯୪୭ ମସିହାରେ "ମଧୁକୋଷ"ର ଜନ୍ମ । "ଜହ୍ନମାମୁଁ" ପତ୍ରିକାରେ ପଦ୍ୟ ଓ ନାନାଦି ରଙ୍ଗରସ ରଚନା ସ୍ଥାନ ପାଉଥିଲା। ମାତ୍ର "ମଧୁକୋଷ"ରେ ପୃଥିବୀର ଭୂଗୋଳ, ଇତିହାସ, ସାହିତ୍ୟ ସହୋପରି ବିଜ୍ଞାନଶାସ୍ତ୍ରମୂଳକ ଲେଖା ସ୍ଥାନ ପାଉଥିଲା। "ମଧୁକୋଷ"ର ଭାଷା ଅବଶ୍ୟ ଟିକିଏ କଠିନ, ତଥାପି ସମ୍ବାଦ ଏବଂ ସରବରାହ ଦୃଷ୍ଟିରେ "ମଧୁକୋଷ"ର ଦାନ ସ୍ମରଣୀୟ । "ମଧୁକୋଷ"ର ପ୍ରଥମ ଭାଗ ତୃତୀୟ ସଂଖ୍ୟାରେ 'ଅଜ୍ଞାତର ସନ୍ଧାନୀ' ଶୀର୍ଷକ ପରିଚ୍ଛେଦରେ "ଡେଭିଡ୍ ଲିଭିଙ୍ଗଷ୍ଟୋନ"ଙ୍କର ପରିଚୟ ପ୍ରସଙ୍ଗରେ କିପରି ଭାଷା ଏବଂ ଶୈଳୀ ଅନୁସୃତ ହୋଇଅଛି, ତାହା ଏଠାରେ ଉଦ୍ଧାର କରାଗଲା —

"ଡେଭିଡ୍ ଲିଭିଙ୍ଗଷ୍ଟୋନ ୧୮୫୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଥର ପାଇଁ ଆଫ୍ରିକା ଯାତ୍ରା କଲେ। ଏଥର ସାଙ୍ଗରେ ସେ ଗୋଟିଏ ଷ୍ଟିମର ନେଇ ଯାଇଥିଲେ। ଏହି ଷ୍ଟିମର ସାହାଯ୍ୟରେ ସେ ଛଅ ବର୍ଷ କାଳ ବୁଲି ବୁଲି ଜାମ୍ବେଜୀ ନଦୀର ପ୍ରଧାନ ଉପନଦୀ ଏବଂ ନ୍ୟାସା ଓ ସିରୱା ନାମକ ହ୍ରଦଦ୍ୱୟ ଆବିଷ୍କାର କରିଥିଲେ । ସିରୱା ହ୍ରଦର ଜଳ ଅତ୍ୟନ୍ତ କଟୁ। ସେ ହ୍ରଦଟି କୁମ୍ଭୀର, ମାଛ, ଗେଣ୍ଡା ଓ ଜଳଚର ପ୍ରଭୃତି ସାମୁଦ୍ରିକ ଜୀବ ଦ୍ୱାରା ପୂର୍ଣ୍ଣ।" (ମଧୁକୋଷ, ପ୍ରଥମ ଭାଗ, ୩ୟ ସଂଖ୍ୟା, ପୃଷ୍ଠା ୧୦୧ ) ।

ଓଡ଼ିଶାର ଲକ୍ଷ ଲକ୍ଷ ବାଳକବାଳିକାମାନଙ୍କ ନିମନ୍ତେ ଏ ପ୍ରକାର ତଥ୍ୟପୂର୍ଣ୍ଣ ରଚନା ପରିବେଷଣ ଅବଶ୍ୟ ମୂଲ୍ୟବାନ ।

"ପତ୍ରପତ୍ରିକା" ମାନଙ୍କର ସଂପାଦନା ବ୍ୟତୀତ ବାଳକୃଷ୍ଣ ବାବୁ ନିଜେ ସୁସାହିତ୍ୟିକ ଏବଂ ଶିଶୁସାହିତ୍ୟର ସୁଲେଖକ । ବହି, ଗଳ୍ପ, କାହାଣୀ ଓ ପଦ୍ୟ ତାଙ୍କର ଲେଖନୀରୁ ନିଃସୃତ ହୋଇଥିଲା । ସେ ସତେ ଯେପରି ନିଜର ଦିବ୍ୟଦୃଷ୍ଟିରେ ଶିଶୁର ମନୋବିଜ୍ଞାନ ଓ ରୁଚି ଅଧ୍ୟୟନ କରି ରଚନାରେ ହାତ ଦେଉଥିଲେ । ତାଙ୍କର ପ୍ରକାଶିତ ରଚନାମାନଙ୍କ ମଧ୍ୟରେ ନୀତିମଞ୍ଜରୀ ବା ଏସପ୍ କଥା, ସପନପୁରୀ ଓ ଫୁଲଗୁଞ୍ଜି ପ୍ରଭୃତି ସ୍ୱାତନ୍ତ୍ର୍ୟମଣ୍ଡିତ ଏବଂ ଐକିକ ଯୋଗ୍ୟତାରେ ରସୋତ୍ତୀର୍ଣ୍ଣ ହୋଇ ପାରିଅଛି ।

'ସଂସ୍କୃତ' ସାହିତ୍ୟରେ 'ପଞ୍ଚତନ୍ତ୍ର', "ହିତୋପଦେଶ" ପ୍ରଭୃତି ରସୋତ୍ତୀର୍ଣ୍ଣ ଚମତ୍କାର ଗଳ୍ପଗୁଚ୍ଛର ଯେଉଁ ପ୍ରତିଷ୍ଠା ଓ କୃତିତ୍ୱ, ଓଡ଼ିଆ ସାହିତ୍ୟରେ "ନୀତିମଞ୍ଜରୀ" ପୁସ୍ତକର ତାହା ହିଁ ମୂଲ୍ୟ ଓ ଗୌରବ । ଏହି ବହି ପ୍ରକାଶିତ ହେବାର ଅଳ୍ପ ସମୟ ମଧ୍ୟରେ ଦ୍ୱିତୀୟ ସଂସ୍କରଣ ୧୯୪୦ରେ ପ୍ରସ୍ତୁତ ହୋଇ ସାରିଥିଲା । 'ନୀତିମଞ୍ଜରୀ' ଆମ ଓଡ଼ିଶାର ଶିଶୁସମାଜର ପଠନପ୍ରହରରେ ଗୀତା, ବାଇବେଲ ଓ ପୁରାଣ ସଦୃଶ ବିବେଚିତ ହୋଇଥାଏ । "ନୀତିମଞ୍ଜରୀ" ଉଭୟ ଗଦ୍ୟ ପଦ୍ୟ ମିଶ୍ରିତ ଗଳ୍ପଗ୍ରନ୍ଥ । ଏହି ଗଳ୍ପର ପର୍ଯ୍ୟାୟରେ ଜୀବଜନ୍ତୁ, ଆକାଶ, ମେଘ, ପବନ, ଚନ୍ଦ୍ର, ତାରା, ବିଦ୍ୟାଳୟର ବିଦ୍ୟାର୍ଥୀ, ଜଉତିଷ, ପୁରୋହିତ, ଚାଷୀ, ବଢ଼େଇ, ଅବଧାନ ପ୍ରଭୃତି ବହୁ କୌତୂହଳ ଚରିତ୍ର ସ୍ଥାନ ପାଇଛନ୍ତି । ଗଳ୍ପଗୁଡ଼ିକ ଅତ୍ୟନ୍ତ କ୍ଷୁଦ୍ର, ସଂକ୍ଷିପ୍ତ; ଭାଷା ଅତ୍ୟନ୍ତ ମନଲାଖି ଓ ସରଳ । ଆଉ ଗଳ୍ପଗୁଡ଼ିକର ପଠନ ପ୍ରଭାବ ଅତ୍ୟନ୍ତ

ଗୁରୁତ୍ୱପୂର୍ଣ୍ଣ । ସାଧାରଣତଃ ଗଳ୍ପଗୁଡ଼ିକର ନାମକରଣ ଉପରେ ହିଁ ଶିଶୁ-ପ୍ରାଣର ଆବେଦନ ଏବଂ ଆକର୍ଷଣ ନିର୍ଭର କରିଥାଏ । ନାମକରଣ ପରେ ଗଳ୍ପର ପରିବେଷଣ ଏବଂ ଶୈଳୀନିର୍ମାଣ ଦ୍ୱିତୀୟ ସ୍ଥାନ ଅଧିକାର କରିଥାଏ ।

"ମାଡମଞ୍ଜରୀ" ଅନ୍ତର୍ଭୁକ୍ତ ଗଳ୍ପର ସଂଖ୍ୟା ହେଉଛି ୧୯୦ ଏବଂ ଲେଖକ ପ୍ରତ୍ୟେକ ଗଳ୍ପକୁ ଶିଶୁମନଗ୍ରାହ୍ୟ, ସରସ ଓ ଜୀବନ୍ତ କରିପାରିଛନ୍ତି । ସୂର୍ଯ୍ୟର ବାହାଘର ଠାରୁ ବିଲେଇ ବେକରେ ଘଣ୍ଟି, ଗୋରୁଗୁହାଳରେ ହରିଣ, ଦେଶୀ ମୂଷା ଓ ସହରର ମୂଷା, ବେଙ୍ଗ ବଇଦ, ବନ୍ଧୁବିଳୟରେ ଘରଚଟିଆ, ପାଡମାଙ୍କଡ଼ ଓ କେଉଟ, ବାଟୋଇ ଓ ବରଗଛ, ଛଦ୍ମବେଶୀ ଗଧ, ଲାଞ୍ଜକଟା ବିଲୁଆ, ମହୁମାଛି ଓ ବ୍ରହ୍ମା, ପିମ୍ପୁଡ଼ି ଓ କପୋତ, ମେଣ୍ଢା ରଖୁଆଳ ଓ ସମୁଦ୍ର ଇତ୍ୟାଦି କାହାଣୀଗୁଡ଼ିକ ପ୍ରାଚୀନକାଳର ବୁଢ଼ୀ ଅସୁରୁଣୀ ଗପ କିଂବା ରଜାପୁଅ ଓ ମନ୍ତ୍ରୀପୁଅ ଗପ ଅପେକ୍ଷା କୌଣସି ଅଂଶରେ ଊଣା ନୁହେଁ । "ମହୁମାଛି ଓ ବ୍ରହ୍ମା" ପଦ୍ୟରେ ଲେଖକ କି ପ୍ରକାରର ରଚନାକୌଶଳ ପ୍ରୟୋଗ କରିଛନ୍ତି, ତାହା ନିମ୍ନଲିଖିତ ଉଦାହରଣରୁ ବେଶ୍ ଉପଲବ୍ଧ ହୁଏ ।

ମହୁଫେଣାଟିଏ ରଚିଲା ମହୁମାଛି ହରଷେ
ସୁବାସ ଫୁଲରୁ ଆଣି ସେ ଦିବ୍ୟ ମଧୁର ରସେ,
× × × ×
ବ୍ରହ୍ମା ତାହୁଁ ତୋଷେ ବୋଇଲେ
ଲଭ ତେବେ ଏ ବର
ନିଜ ଦୋଷୁଁ କିନ୍ତୁ ପାଇବୁ ବଡ଼ ଅନିଷ୍ଟ ଫଳ,

ଯହିଁ ତୁ ମାରବୁ ନାହୁଡ଼, ତହିଁ ଯିବ ଅଟକ
ସେ ନାହୁଡ଼ ନାଶେ କ୍ଷଣକେ ନାଶ ଯିବୁ ପାତକ ।

ସେହିପରି "ପିମ୍ପୁଡ଼ି ଓ ଝିଣ୍ଟିକା" ଗଳ୍ପରେ କି ପ୍ରକାର ମନର ଦରଦ ଏବଂ ପୃଷ୍ଠଭୂମି ରହିଛି, ତାହା ପରୀକ୍ଷାଯୋଗ୍ୟ ।

ପିମ୍ପୁଡ଼ି ଘରେରେ ପିମ୍ପୁଡ଼ି ଘର
କାହିଁ ଯାଉଅଛୁ ତୁ ଧାଇଁ ଧାଇଁ,
ଏତେ ଧନ୍ଦ ହେଉଥାଉ କାହିଁକି
ଗୀତ ଶୁଣିବାକୁ ମନ ନାହିଁକି ?

× × ×

ଗୀତ ଗୋଟି ତୋର ବଡ଼ ମଧୁର
ଶୁଣି ବସିଲେ ଗୋ ହେବ ଉଛୁର,
ଖରାଦିନେ ମୋର କାମ ଅଧିକ
ବରଷା କାଳରେ ନ ଥିବ ଦକ ।

ଏଠାରେ ପିମ୍ପୁଡ଼ି ଓ ଶିଶୁର ଯେଉଁ କଥୋପକଥନ, ତାହା କେବଳ ଏକ ସ୍ୱପ୍ନ-ଉଜ୍ଜ୍ୱଳ ଆଦର୍ଶ ସରଳ ଜଗତର କାହାଣୀ । ଆଉ ସେହି କାହାଣୀ ସବୁକୁ ରୂପାନ୍ୱିତ କରି ଓଡ଼ିଆ ଶିଶୁସାହିତ୍ୟର ଭୂମିକାକୁ ଯେ ବହୁ ବର୍ଷ ପାଇଁ କର୍ମମୁଖର କରି ପାରିଥିଲେ, ସେ ହେଉଛନ୍ତି ଶିଶୁର ପ୍ରିୟ ଲେଖକ ସ୍ୱର୍ଗୀୟ ବାଳକୃଷ୍ଣ କର । ଓଡ଼ିଆ ସାହିତ୍ୟର ଶିଶୁସାହିତ୍ୟ ଶାଖା ପ୍ରତି ତାଙ୍କର ଦାନ ସର୍ବଦା ସ୍ମରଣ-ଯୋଗ୍ୟ । ତାଙ୍କର ସମୟରୁ ହିଁ ଓଡ଼ିଆ ଶିଶୁସମାଜର ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ରୂପରେଖ ପ୍ରାପ୍ତ ହୋଇଅଛି ।

# ଗୋପବନ୍ଧୁଙ୍କର ସାହିତ୍ୟ ସାଧନାର ଏକ ଆଭିମୁଖ୍ୟ

ଜାତୀୟ ଜୀବନର ଆତ୍ମବିକାଶ ଯୁଗରେ ବହୁ ମହାପୁରୁଷଙ୍କର ଆବିର୍ଭାବ ହୋଇଥାଏ । ଆଧୁନିକ ଉତ୍କଳରେ ବିଂଶ ଶତାବ୍ଦୀର ଉନ୍ମେଷ ସମୟରେ ଯେଉଁ ବିଭିନ୍ନ ଭାବଧାରା ଓ ସଂସ୍କୃତି ଆତ୍ମପ୍ରକାଶ କଲା ଏବଂ ସେହି ଭାବଧାରା ଓ ସଂସ୍କୃତିର ଯେଉଁମାନେ ହେଲେ ବାର୍ତ୍ତାବହ, ସେମାନଙ୍କ ମଧ୍ୟରେ ପୁରୀଜିଲ୍ଲା "ସୁଆଣ୍ଡୋ" ଗ୍ରାମର ଅମର ସନ୍ତାନ ଏବଂ ମଧୁରମୟୀ ପୁଣ୍ୟପୀଠ "ସାକ୍ଷୀଗୋପାଳ"ର ଚଳନ୍ତି କର୍ମବୀର ଗୋପବନ୍ଧୁ ହେଉଛନ୍ତି ଅଗ୍ରଗଣ୍ୟ । ଭାରତରେ ଜାତୀୟ ମୁକ୍ତି-ଆନ୍ଦୋଳନର ପ୍ରବାହ ଏବଂ ସତ୍ୟ-ଅହିଂସା-ଅସହଯୋଗପ୍ରଣୋଦିତ କର୍ମପରମ୍ପରା ଏ ଦେଶରେ ଚିନ୍ତାର ନୂତନ ସରଣୀ ଫିଟାଇ ପାରିଥିଲା । ତଦାନୀନ୍ତନ ପ୍ରଖର ଚିନ୍ତା, ବୁଦ୍ଧି ଏବଂ କଳ୍ପନାର ଉଚ୍ଛ୍ୱାସରେ ଜାତୀୟ ଯୁବଗଣ ଆତ୍ମୋତ୍ସର୍ଗ କରି ପାରିଥିଲେ । ଏହିପରି ଜ୍ୱଳନ୍ତ ଆତ୍ମୋତ୍ସର୍ଗ, ପବିତ୍ର ସାଧନା ଓ ନିଷ୍ଠା ଉତ୍କଳମଣିଙ୍କ ଜୀବନରେ ପ୍ରତିବିମ୍ବିତ ହେଲା । ଜାତୀୟ ଜୀବନର ଆଭିମୁଖ୍ୟ ଓ ଚେତନା ଉପଲବ୍ଧି କରି ଉତ୍କଳମଣି ଜୀବନର ବିଭିନ୍ନ ପର୍ଯ୍ୟାୟରେ କର୍ମଭୂମିକାରେ ଅବତୀର୍ଣ୍ଣ ହେଲେ । ଓଡ଼ିଶାର ଜାତୀୟ ଜୀବନ, ସାମାଜିକ ଜୀବନ ତଥା ସାଂସ୍କୃତିକ ବିଭାଗ ଏକାଧାରରେ ଗୋପବନ୍ଧୁଙ୍କର କଂଗ୍ରେସର କର୍ମପଥ ଗ୍ରହଣ, ସତ୍ୟବାଦୀ ଜାତୀୟ ବିଦ୍ୟାଳୟ-

ସ୍ଥାପନ ଏବଂ ସର୍ବୋପରି 'ସତ୍ୟବାଦୀ' ଓ 'ସମାଜ' ପରି ଦୁଇଟି ସାହିତ୍ୟିକ ପତ୍ରିକାର ପ୍ରତିଷ୍ଠାଦ୍ୱାରା ଓତଃପ୍ରୋତ ଭାବରେ ପ୍ରଭାବିତ ହେଲା । ସର୍ବମୋଟ ପଚିଶ ତିରିଶ ବର୍ଷର ସାଧନାର ଝଙ୍କୃତ ହୁତାଶନ ଏ ଜାତିର ଭାଗ୍ୟାକାଶରୁ ପୁଞ୍ଜୀଭୂତ ଅନ୍ଧକାରକୁ ବିଚ୍ଛିନ୍ନ କରିଥିଲା । ଓଡ଼ିଆ ସାହିତ୍ୟରେ ଉତ୍କଳମଣିଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ସତ୍ୟବାଦୀ ସାହିତ୍ୟିକଗୋଷ୍ଠୀ ଏକ ନବଯୁଗର ସୂଚନା ଦେଲା ।

ବିଶେଷତଃ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗୋପବନ୍ଧୁଙ୍କର ବହୁତୋ-ମୁଖୀ ସାରସ୍ୱତ ପ୍ରତିଭାର ମୁଦ୍ରାଙ୍କନ ସୁସ୍ପଷ୍ଟ । ତାଙ୍କର ଜାତୀୟ ଭାବ-ଉଦ୍ରେକକାରୀ ରଚିତ ବହୁବିଧ କାବ୍ୟକବିତାର ନିଗୂଢ଼ ସତ୍ୟ ଗଭୀର ଭାବରେ ଏହି ଜାତିର ଅନ୍ତରାତ୍ମାକୁ ସ୍ପର୍ଶ କରିପାରିଛି । ଏହା ତାଙ୍କର ସୃଷ୍ଟିଶିଳ୍ପପ୍ରଧାନ ମାନସର ଅବିଭାଜ୍ୟ ବିଶ୍ଳେଷଣ ।

'ସତ୍ୟବାଦୀ' ପତ୍ରିକା ଓ 'ସମାଜ' ଦୈନିକ ଗୋପବନ୍ଧୁଙ୍କ ସାହିତ୍ୟଶିଳ୍ପସାଧନାର ଅପରିହାର୍ଯ୍ୟ ସଙ୍କେତସ୍ୱରୂପ । ତଦ୍ୱାରା ତାଙ୍କ ଶିଳ୍ପମାନସ, ସ୍ରଷ୍ଟା-ବିଦଗ୍ଧ ଅନ୍ତର ପ୍ରାଞ୍ଜଳ ଭାବରେ ପ୍ରତିଫଳିତ ହୋଇଥାଏ ।

ଓଡ଼ିଆ ଗଦ୍ୟସାହିତ୍ୟରେ ପ୍ରାମାଣିକରୂପ ଗୋପବନ୍ଧୁଙ୍କର ବହୁବିଧ ଗଦ୍ୟ ରଚନାରେ ପରିଦୃଷ୍ଟ । ତାଙ୍କର ସୃଷ୍ଟିଶିଳ୍ପ ସାଧନା ପରିସରରୁ ଗଦ୍ୟ ବାଦ୍ୟ ପଡ଼ି ନ ଥିଲା । ତାଙ୍କର ବିଳକ୍ଷ ସଂପାଦନାରେ 'ସତ୍ୟବାଦୀ' ମାସିକ ପତ୍ରିକା ପ୍ରଥମେ ସାକ୍ଷୀଗୋପାଳଠାରୁ ପ୍ରକାଶିତ ହୁଏ । 'ସତ୍ୟବାଦୀ'ର ପ୍ରଥମ ସଂଖ୍ୟା ଅର୍ଥାତ୍ ୧ମ ଖଣ୍ଡ ୧ମ ସଂଖ୍ୟା ଜ୍ୟେଷ୍ଠ ୧୩୨୨ରେ ଗୋପବନ୍ଧୁ ଆଦର୍ଶ ଓ 'ଆକାଂକ୍ଷା' ଶୀର୍ଷକ ସ୍ତମ୍ଭରେ ନିମ୍ନଲିଖିତ ଭାବରେ ଆଲୋଚନା କରିଥିଲେ—

"ଏ ଉଦ୍ଦେଶ୍ୟ ପ୍ରାପ୍ତିର ଉପାୟ କ'ଣ ? ସତ୍ୟେନ ନାସ୍ତ୍ୟତେ ପରଂ । ଅର୍ଥାତ୍ ସତ୍ୟଦ୍ୱାରା ପରମପଦ ଲାଭ ହୁଏ । ସତ୍ୟର ଲାଭ ସତ୍ୟ ପଥରେ । ...... ଏ ଉଚ୍ଚ ଆଦର୍ଶମାନ ଆମ୍ଭମାନଙ୍କର ପୈତୃକ-ସଂପତ୍ତି । ଆଦର୍ଶ ଅନୁସରଣରେ ଆମ୍ଭେମାନେ ଆମ୍ଭମାନଙ୍କ ପୂର୍ବଗୌରବ ଓ ମାନବସମାଜରେ ଆମ୍ଭମାନଙ୍କ ଉପଯୁକ୍ତ ସ୍ଥାନ ଲାଭ କରିବାକୁ ସକ୍ଷମ ହେବୁଁ । ତେଣୁ ଆମ୍ଭମାନଙ୍କର ଭାଷା, ଭାବ, କ୍ରିୟା ସମସ୍ତ ସତ୍ୟର ପନ୍ଥା ଅନୁସରଣ କରିବା ଉଚିତ ଏବଂ ସେଥିନିମନ୍ତେ ସବୁପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଏ ଭାବମାନ ସମାଜରେ ଯଥାସମ୍ଭବ ପ୍ରଚାର କରି ମାତୃଭୂମିକୁ ନବଆଶା ଓ ଉତ୍ସାହରେ ଉଦ୍ଦୀପିତ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ବିଶ୍ୱମାନବର ଲକ୍ଷ୍ୟଭୂମି ହେଲେ ହେଁ ଦେଶ-କାଳଦ୍ୱାରା ସୀମାବଦ୍ଧ ମାନବଶକ୍ତିର ପ୍ରୟୋଗ ଓ ପରିଚାଳନା ନିମନ୍ତେ ଭଗବାନ ତାର ଜନ୍ମଭୂମିକୁ ବିଶିଷ୍ଟ କାର୍ଯ୍ୟକ୍ଷେତ୍ରରୂପେ ନିର୍ଦ୍ଦେଶ କରିଅଛନ୍ତି । ମାତ୍ର ଓଡ଼ିଶା ଆମ୍ଭମାନଙ୍କର କାର୍ଯ୍ୟକ୍ଷେତ୍ର ହେଲେ ହେଁ ଏହା ଭାରତରୁ କିମ୍ବା ବିଶାଳ ମାନବଜଗତରୁ ପୃଥକ୍ ନୁହେଁ । ଉତ୍କଳବାସୀ ତଥା ଭାରତବାସୀ ବିରାଟ ମାନବସମାଜର ଅଂଶବିଶେଷ । ସେମାନେ ମାନବଜାତିର ସମସ୍ତ ପ୍ରକାର ଉପାର୍ଜନ ଓ ଅଭିବୃଦ୍ଧିର ଅଧିକାରୀ ଏବଂ ନିଜର ସଂପଦ ଓ ସହଯୋଗିତାଦ୍ୱାରା ମାନବସମାଜର ଉନ୍ନତି ବିଧାନ ନିମନ୍ତେ ଦାୟୀ । ତେଣୁ ଜନ୍ମଭୂମିର ଉନ୍ନତିରେ ଯଥାସମ୍ଭବ ଆତ୍ମନିୟୋଗ କରିପାରିଲେ ଆମ୍ଭେମାନେ ବିଶ୍ୱସେବା କଲୁ ବୋଲି ମନେ କରି ଆଶ୍ୱସ୍ତ ହେବୁଁ । ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ, ବରଂ ବିଶ୍ୱପ୍ରୀତି ବିହୀନ ପ୍ରାଣରେ ଜାତୀୟତା ଓ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।

ପୂର୍ବପୁରୁଷମାନଙ୍କ ପଥ ଏ କ୍ଷେତ୍ରରେ ଆମ୍ଭମାନଙ୍କର ଅନୁ-ସରଣୀୟ । 'ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ' ଚରାଚର ଜଗତର ତର୍ପଣବିଧାନ

ହିନ୍ଦୁ ଆଚାରର ନିତ୍ୟ କର୍ତ୍ତବ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ହେଁ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ଏହି ଦେଶାନୁରାଗ ଗୀତରେ ପ୍ରାଣର ପ୍ରଗାଢ଼ ମମତା ପ୍ରକାଶ କରିଅଛନ୍ତି ମ 'ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି' ଏହା ଆମ୍ଭମାନଙ୍କର ବିଶ୍ୱାସ''— ଗୋପବନ୍ଧୁ । ସତ୍ୟବାଦୀ ୧ମ ଖଣ୍ଡ, ୧ମ ସଂଖ୍ୟା, ଜ୍ୟେଷ୍ଠ ୧୩୨୨ ।

ଗୋପବନ୍ଧୁଙ୍କର ଗଦ୍ୟରଚନାଶୈଳୀ ଏକ ସ୍ୱତନ୍ତ୍ର ସିଦ୍ଧିର ଅଧିକାରୀ । ତାଙ୍କର ପଦ୍ୟରେ ଯେଉଁ ଜାତୀୟତା ଆଦର୍ଶ ପ୍ରତିଫଳିତ, ତାଙ୍କ ଲିଖିତ ପ୍ରବନ୍ଧମାନଙ୍କରେ ମଧ୍ୟ ଏକ ଅଫୁରନ୍ତ ପ୍ରତିଭାସରେ ପ୍ରତିଧ୍ୱନିତ । ଫକୀରମୋହନ ନିଜର କ୍ଷୁଦ୍ର ଗଳ୍ପମାନଙ୍କରେ ଗ୍ରାମ୍ୟଭାଷା ପ୍ରୟୋଗ କରିଥିଲେ । ଏହି କ୍ଷେତ୍ରରେ ଫକୀରମୋହନ ଓଡ଼ିଆ ଗଦ୍ୟ-ସାହିତ୍ୟରେ ନୂତନ ଶୈଳୀର ପରମ୍ପରାବାଦୀ ସାଧକ; ମାତ୍ର ଗୋପବନ୍ଧୁଙ୍କର ଗଦ୍ୟ-ଶୈଳୀ ନିବନ୍ଧ କିମ୍ବା ପ୍ରବନ୍ଧ ସମ୍ବଳିତ । ଫକୀରମୋହନଙ୍କ ଯୁଗରେ ଗଦ୍ୟର ଆତ୍ମା ଏବଂ ଅଙ୍ଗ ଏକ ଅବିଚ୍ଛିନ୍ନ ଭୂମିକାରେ କ୍ରମିକ ବିକାଶପ୍ରାପ୍ତ ହୋଇଥିଲା । କିନ୍ତୁ ଏହି ବିଂଶ ଶତାବ୍ଦୀର ଆଦ୍ୟକାଳର ଭିତ୍ତିଭୂମି କ୍ରମଶଃ ସମ୍ପ୍ରସାରିତ ହେଲା । ଫଳରେ ଗଦ୍ୟ ବିଭିନ୍ନ ଉଦ୍ଦେଶ୍ୟରେ ପ୍ରଯୁକ୍ତ ହେଲା । ଗଦ୍ୟ ବହୁମୁଖୀ ଏବଂ ବୈଚିତ୍ର୍ୟମଣ୍ଡିତ ହେଲା । ଫଳରେ ଗଦ୍ୟଲେଖକଗୋଷ୍ଠୀର ବ୍ୟକ୍ତିତ୍ୱ ଏହି କାଳରେ ବିଶେଷ ଭାବରେ ରଚନାର ବଳିଷ୍ଠତା, ବିଭିନ୍ନତା ଏବଂ ବିଚିତ୍ରତା ମଧ୍ୟରେ ପରିସ୍ଫୁଟ ଏବଂ ଶାଣିତ ହେଲା । ଗୋପବନ୍ଧୁଙ୍କର ପ୍ରବନ୍ଧଚୟ ଏକ ସ୍ୱତନ୍ତ୍ର ଆଦର୍ଶବାଦ ବହନ କରିଥିଲା । କାରଣ ଗୋପବନ୍ଧୁ ଥିଲେ ଏକ ମହାନ୍ କର୍ମପୁରୁଷ । ତେଣୁ ତାଙ୍କର କର୍ମମୟ ଜୀବନର ପ୍ରତିଚ୍ଛବି ଲିଖିତ ରଚନା ମଧ୍ୟରେ ସ୍ୱାତନ୍ତ୍ର୍ୟ ଟୀକା ଅଙ୍କିତ କରି ପାରିଥିଲା । ବିଶ୍ୱ ସମବେଦନାଶୀଳତା ହିଁ ଗୋପବନ୍ଧୁଙ୍କର ଶିଳ୍ପସୃଷ୍ଟିର ସ୍ୱୀକୃତ ମୂଲ୍ୟାଙ୍କ । ତେଣୁ ଗୋପବନ୍ଧୁଙ୍କର

ସମସ୍ତ ଗଦ୍ୟ ସମ୍ପାଦନା ଏକ ସାବଜନୀନ ସରଳ ଅପେକ୍ଷାକୃତ ସୁଗମ ଶୈଳୀଦ୍ୱାରା ପରିପୁଷ୍ଟ ।

'ସତ୍ୟବାଦୀ' ପତ୍ରିକାର ସମ୍ପାଦକୀୟ ସ୍ତମ୍ଭରେ ଗୋପବନ୍ଧୁ ଯେଉଁସବୁ ଆଲୋଚନା କରୁଥିଲେ, ତାହା ବାସ୍ତବିକ ଏକ ନିର୍ମଳ ଅବିକୃତ ସ୍ୱୟଂସଂପୂର୍ଣ୍ଣ ଗଦ୍ୟଭଣ୍ଡାର ଅତ୍ୟୁଚ୍ଚ ସୋପାନରେ ପ୍ରତିଷ୍ଠିତ । 'ସତ୍ୟବାଦୀ' ପତ୍ରିକା ଓଡ଼ିଆ ସାହିତ୍ୟ, ବିଶେଷତଃ ପତ୍ରପତ୍ରିକା କ୍ଷେତ୍ରରେ ଏକ 'ସ୍ୱତନ୍ତ୍ର ସାହିତ୍ୟିକ ଦିଗ୍‌ଦର୍ଶକ ବୋଲି କୁହାଯାଇପାରେ । ଏ ଦେଶରେ ବହୁ ନୂତନ ଗଦ୍ୟଲେଖକ, ପ୍ରାବନ୍ଧିକ, ସମାଲୋଚକ ଏବଂ କବି ସୃଷ୍ଟି କରିବାରେ ସତ୍ୟବାଦୀ ପତ୍ରିକାର ସାମର୍ଥ୍ୟ ଓ ଦାୟିତ୍ୱ ଅବିସମ୍ବାଦିତ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ 'ସତ୍ୟବାଦୀ' ପତ୍ରିକା ଓଡ଼ିଆ ଗଦ୍ୟସାହିତ୍ୟ କ୍ଷେତ୍ରରେ ଏକ ନୂତନ ଶୈଳୀର ପ୍ରବର୍ତ୍ତକ । ଗଳ୍ପ, ଉପନ୍ୟାସ ଏବଂ ପ୍ରବନ୍ଧ ପ୍ରଭୃତିର ଭାଷା ମୌଳିକ ମାର୍ଗ ଅନୁସରଣ କଲା । ବହୁ ନୂତନ ଲେଖକ ସେତେବେଳେ 'ସତ୍ୟବାଦୀ' ପୃଷ୍ଠାରେ ଅବତୀର୍ଣ୍ଣ ହେଉଥିଲେ । ଫଳରେ ଗୋପବନ୍ଧୁଙ୍କ ବହୁମୁଖୀ ସାଧନାର ସୂକ୍ଷ୍ମ ଇଙ୍ଗିତରେ ଲେଖକମାନେ ଏକ ନୂତନ ଦୃଷ୍ଟିକୋଣ ଆୟତ୍ତାଧୀନ କରିପାରିଥିଲେ । ଗୋପବନ୍ଧୁଙ୍କର ପ୍ରବନ୍ଧମାଳା ଆଲୋଚନାରୁ ଅନ୍ୟମାନଙ୍କ ପକ୍ଷେ ଏକ ଗଦ୍ୟଶୈଳୀ ଅଭ୍ୟାସ ଓ ଆହରଣ କରିବାରେ ସହାୟକ ହେଲା । ଗୋପବନ୍ଧୁଙ୍କର ଗଦ୍ୟଶୈଳୀ ବିଂଶ ଶତାବ୍ଦୀର ଆଦ୍ୟପର୍ବର ଏକ ପକ୍ଷରେ ଗଦ୍ୟର ଗ୍ରାମ୍ୟତା ଏବଂ ଅନ୍ୟପକ୍ଷରେ ଗଦ୍ୟର ସଂସ୍କୃତ ପ୍ରାଧାନ୍ୟରୁ ପ୍ରାୟଶଃ ମୁକ୍ତ । ଗଦ୍ୟର ଗ୍ରାମ୍ୟତା ପ୍ରଚଳନ ନିମନ୍ତେ ଫକୀରମୋହନ ଦାୟୀ ଏବଂ ଓଡ଼ିଆ ଗଦ୍ୟଭାଷାର ସଂସ୍କୃତ ପ୍ରାଧାନ୍ୟ ହେଉଛି ଭକ୍ତକବି ମଧୁସୂଦନଙ୍କର ଅବଲମ୍ବିତ ପଦ୍ଧତି । ଭାବ ଏବଂ ଭାଷାପ୍ରକାଶଗତ ଗୋପବନ୍ଧୁଙ୍କ ରଚନାବଳୀରେ କପରି ପୂର୍ବବର୍ତ୍ତୀମାନଙ୍କଠାରୁ ବିଚ୍ଛିନ୍ନ ହୋଇ-

ଯାଇଛି, ତାହା ସଂଯୁକ୍ତ ପରିଚ୍ଛେଦର ରଚନା ବିଶ୍ଳେଷଣ କଲେ ଜଣାଯାଏ । ପଦ୍ୟ କମ୍ବା କବିତାରେ ସ୍ୱର, ଛନ୍ଦ, ଭାବ ପ୍ରଭୃତିର ଯୋଗ୍ୟତା ଉପରେ କାବ୍ୟସୃଷ୍ଟିର ସାଫଲ୍ୟ ନିର୍ଭର କରେ; ମାତ୍ର ଗଦ୍ୟସାହିତ୍ୟର ଏତାଦୃଶ ଯୋଗ୍ୟତା ଭିନ୍ନମୁଖୀ କାରଣ ଏକ ସୁଷ୍ଠୁ ସର୍ବଗ୍ରାହ୍ୟ କ୍ରିୟାନ୍ୱିତ ଗଦ୍ୟଶୈଳୀ ନିମନ୍ତେ ଭାଷାଗତ ସାବଲୀଳତା ଏବଂ ଭାବଗତ ସ୍ୱଚ୍ଛନ୍ଦତା ଅବଶ୍ୟମ୍ଭାବୀ । ସମାଲୋଚନା ସାହିତ୍ୟ ମଧ୍ୟ ଏହି ଯୁଗରେ ଲେଖକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଫଳରେ ଗଦ୍ୟସାହିତ୍ୟ ବିଭିନ୍ନ ଦିଗରେ ପ୍ରୋତ୍ସାହନ ଲାଭ କରିଥିଲା । 'ସତ୍ୟବାଦୀ ପତ୍ରିକା ପ୍ରତିଷ୍ଠା ବାସ୍ତବିକ ଓଡ଼ିଆ ସାହିତ୍ୟରେ ଏକ ନୂତନ ଆଭିମୁଖ୍ୟ ଆନୟନ କରିଥିଲା । ସର୍ବତ୍ର ଗଦ୍ୟ ଲେଖା ପାଇଁ ଲେଖକସମାଜରେ ଚହଳ ପଡ଼ିଗଲା । ଫକୀର ମୋହନଙ୍କ ସମୟରେ ଗଳ୍ପ ଏବଂ ଉପନ୍ୟାସ ରଚନା ପ୍ରବୃତ୍ତି ଯେଉଁ ସିଦ୍ଧି ଲାଭ କରିଥିଲା, ସେହି ପ୍ରବୃତ୍ତିର ବିକଶିତ ପର୍ଯ୍ୟାୟରେ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ 'ସତ୍ୟବାଦୀ' ପତ୍ରିକା ଅଗ୍ରଗତି ହାସଲ କଲା । ଅନନ୍ୟସାଧାରଣ ପ୍ରଗତି ହିଁ ଏହି ସମୟର ଗଦ୍ୟଶୈଳୀର ବିଶିଷ୍ଟ ସ୍ମାରକୀ । ଗୋପବନ୍ଧୁଙ୍କ ଗଦ୍ୟଶୈଳୀ ଯୁଗ୍ମ ଶକ୍ତିକୁ ଆଶ୍ରୟ କରୁଥିଲା । ପ୍ରଥମତଃ ଭାଷାର ସରଳତା, ଦ୍ୱିତୀୟତଃ ସଂସ୍କୃତ ଭାଷାର ମୁଦ୍ରାଙ୍କନ ତାର ବିଶ୍ଳେଷଣାତ୍ମକ ରଚନାରୀତିର ସର୍ବସ୍ୱ । ଗୋପବନ୍ଧୁଙ୍କର ଗଦ୍ୟରଚନା ଓ ପ୍ରବନ୍ଧମାନଙ୍କରେ ବହୁ ସଂସ୍କୃତ ଉଦ୍ଧୃତି ପରିଦୃଷ୍ଟ ହୁଏ । ଗୋପବନ୍ଧୁଙ୍କର ସମ୍ପାଦକୀୟ ଉକ୍ତି ଓ ନୀତି, ଭାବଗର୍ଭିତ ଏବଂ ଯୁକ୍ତିସମନ୍ୱିତ ହେଉଥିଲା । ଉକ୍ତ ଗଦ୍ୟସାହିତ୍ୟସୃଷ୍ଟି ବ୍ୟତୀତ ଦେଶରେ ଶିକ୍ଷା ପ୍ରଚାର ପାଇଁ 'ସତ୍ୟବାଦୀ' ପତ୍ରିକା ଯଥେଷ୍ଟ ଅନୁଧ୍ୟାନ ଦେଉଥିଲା । ଉତ୍କଳୀୟ ସଂସ୍କୃତିର ଧାରାବାହିକ ଆଲୋଚନା ସମୟୋପଯୋଗୀ ବିଶ୍ଳେଷଣ ମଧ୍ୟ 'ସତ୍ୟବାଦୀ' ପୃଷ୍ଠା ମଣ୍ଡନ

କରୁଥିଲା । ଏହି 'ସତ୍ୟବାଦୀ' ପତ୍ରିକା ଯୁଗରେ ଐତିହାସିକ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର ସାଧନା ଚରମ ଉତ୍କର୍ଷ ଲାଭକଲା । ଫଳତଃ ଏହି ଦଶନ୍ଧିରେ କୋଣାର୍କ ତୁଲ୍ୟ ବିରାଟ ବିବରଣୀମୂଳକ ଗଦ୍ୟଗ୍ରନ୍ଥ 'କୋଣାର୍କ' ଏବଂ 'ବାରବାଟୀ' ଲିଖିତ ହୋଇଥିଲା । 'କୋଣାର୍କ' ଏବଂ 'ବାରବାଟୀ' ଗ୍ରନ୍ଥର ଗଦ୍ୟଶୈଳୀ ଅନନ୍ୟସାଧାରଣ ଏବଂ ପ୍ରମାଣିକ ଗଦ୍ୟ ସ୍ତରର ନମୁନା । ଇତିହାସର ଉପାଦେୟତା ଏବଂ ଦେଶର ପ୍ରାଚୀନ ସଂସ୍କୃତିର ପାରବଶ୍ୟ ତତ୍କାଳୀନ ପ୍ରବନ୍ଧ ସମୂହରେ ଯେପରି ସ୍ୱତଃ ଅଙ୍କିତ ହୋଇ ଯାଉଥିଲା, ତାହାର କାରଣ ଭାଷାର ଅପ୍ରତିହତ ଗତି, ଭାବର ସ୍ୱତନ୍ତ୍ର ସାଜସଜ୍ଜା, ଗଦ୍ୟାଂଶର ବର୍ଗୀକରଣ, ଏହି ଯୁଗର ଗଦ୍ୟଶୈଳୀର ନିଦର୍ଶନ । 'ସତ୍ୟବାଦୀ' ପତ୍ରିକା ପ୍ରକାଶନ ସମୟ ଓଡ଼ିଆ ଜାତୀୟ ଜୀବନରେ ଏକ ସମସ୍ୟାବହୁଳ ସମୟ ।

ଦିନକୁ ଦିନ ଦେଶରେ ମହାତ୍ମା ଗାନ୍ଧିଙ୍କର ସତ୍ୟ ଓ ଅହିଂସା ଆନ୍ଦୋଳନ ପ୍ରଚାରିତ ହେଉଥିଲା । ତେଣୁ ଜାତୀୟ ସମସ୍ୟାର ସୃଷ୍ଟି ସଙ୍ଗେ ସଙ୍ଗେ ସେ ସବୁର ସମାଧାନ ପାଇଁ ଜାତୀୟ କର୍ମୀଗଣ ବ୍ୟସ୍ତ ରହୁ-ଥିଲେ । ପତ୍ରପତ୍ରିକାମାନଙ୍କରେ ବରାବର ବିଭିନ୍ନ ସମସ୍ୟା ଆଲୋଚିତ ହେଉଥିଲା ଏବଂ ସମାଧାନମାର୍ଗ ମଧ୍ୟ ସମ୍ପାଦକୀୟ ସୂତ୍ରରେ ସୂଚିତ ଏବଂ ଉଦ୍ଭାବିତ ହେଉଥିଲା । ଉଚ୍ଚଶିକ୍ଷା ପ୍ରଶ୍ନ ଏ ଦେଶରେ ବରାବର ଏକ ଜଟିଳ ସମସ୍ୟା ରୂପ ଧାରଣ କରିଅଛି । ପ୍ରତ୍ୟେକ ଯୁଗରେ ତାହା ଚିନ୍ତାଶୀଳ ମନୀଷୀମାନଙ୍କର ବିଶେଷ ଭାବନାର ହେତୁ ବୋଲି ଜଣାଯାଏ । ୧୩୨୨ ସାଲ କୁମ୍ଭମାସ 'ସତ୍ୟବାଦୀ' ମାସିକ ପତ୍ରିକାରେ ଗୋପବନ୍ଧୁ ପଲ୍ଲୀପ୍ରସଙ୍ଗ ଶୀର୍ଷକ ଏକ ଆଲୋଚନାର ଅବତାରଣା କରିଥିଲେ । ଏହି ଲେଖାର ଶିରୋନାମା ହେଉଛି 'ସୂଚନା' ।

"ଆଜିକାଲି ଅଳ୍ପ ବହୁତ ଦେଶରେ ଯେ କିଛି ଶିକ୍ଷା ପାଇଲେ ତାଙ୍କ ମୁହଁ ସହର ଆଡ଼କୁ । ଯେଉଁମାନେ ବିଶ୍ୱବିଦ୍ୟାଳୟ ଉପାଧି ପାଇଲେ, ସେମାନେ ପଢ଼ିବା ଅବସ୍ଥାରେ ପନ୍ଦର ସତର ବର୍ଷ ସହରରେ ରହି ଏପରି ଅଭ୍ୟସ୍ତ ହେଲେ ଯେ ମଫସଲ ସେମାନଙ୍କୁ ଆଉ ସୁଖ ଲାଗୁ ନାହିଁ । ପୁଣି ବୃତ୍ତିକଷ୍ଟ ହେତୁ ହେଉ ବା ବ୍ୟବସାୟ ଯୋଗୁଁ ହେଉ, ସେମାନଙ୍କର ଜୀବିକା ଉପାୟର ସ୍ଥାନ ହେଲା ସହର । ଯେଉଁମାନେ ଉପାଧି ପର୍ଯ୍ୟନ୍ତ ଯାଇ ନାହାନ୍ତି, ବିଶ୍ୱବିଦ୍ୟାଳୟର ଗୋଟିଏ ଅଧେ ପରୀକ୍ଷାରେ ମାତ୍ର ଉତ୍ତୀର୍ଣ୍ଣ ହୋଇଛନ୍ତି କିମ୍ବା ସେଠାରେ ସୁଦ୍ଧା ପହଞ୍ଚି ନ ପାରି ଅଧବାଟରେ ରହିଅଛନ୍ତି, ସେମାନଙ୍କ ମଧ୍ୟରୁ କେହି କିରାଣି ହେବା ଲାଗି, କେହି ବା କାହାର ଗୃହଶିକ୍ଷକ ହେବା ଲାଗି ଅଥବା ଏହିପରି ଅନ୍ୟ କୌଣସି କର୍ମ ଉପଲକ୍ଷରେ ସହରରେ ରହୁଅଛନ୍ତି । ......... ପଲ୍ଲୀସହିତ ଶିକ୍ଷିତମାନଙ୍କ ସମ୍ପର୍କ ସହାନୁଭୂତି ସ୍ନେହମମତା କ୍ରମେ ଏହିପରି ତୁଟିଯାଉଥିବା ସ୍ଥଳେ ଜାତୀୟ ଜୀବନ ସାମାଜିକ କଲ୍ୟାଣ ଦେଶର ଉନ୍ନତି ପ୍ରଭୃତି କଥାମାନ ଏହି ଶିକ୍ଷିତ ଲୋକଙ୍କ ମୁଖରେ ଅସାର ବିଡ଼ମ୍ବନା ବୋଲି ବୋଧହୁଏ ନାହିଁ କି ? ଦେଶକୁ ବୁଝିବାକୁ ହେଲେ ସହର, ପ୍ରାନ୍ତର, ଗ୍ରାମ, ଗୁହା, ପଡ଼ା, ପାଟଣା, ପୁରପଲ୍ଲୀ ଶ୍ରେଷ୍ଠବଡ଼ ସମସ୍ତ ଜନପଦକୁ ହିସାବକୁ ନେବାକୁ ହେବ ।"

ଉପରୋକ୍ତ ଗଦ୍ୟାଂଶର ଭାଷା ଯେଉଁ ପରିମାଣରେ କ୍ରିୟାଶୀଳ ରଚନାଭଙ୍ଗୀ ଓ ଶୈଳୀ ସେହିପରି ଏକ ତୀକ୍ଷ୍ଣ ମାନସ ପ୍ରସୂତ । ଏହି ଲେଖାଟିକୁ ବିଶ୍ଳେଷଣ କଲେ ସହଜରେ ଗୋପବନ୍ଧୁଙ୍କର ଗଦ୍ୟଶୈଳୀ ନେଇ ସାର୍ବଜନୀନତା ଆନୁଭୂତ ହୁଏ । ଜଣାପଡ଼େ ଅନୁଭୂତିର ପ୍ରକାଶ । ତାହା ତାହା ଯେପରି ପ୍ରତ୍ୟକ୍ଷ ବିଦ୍ରୋହାକ୍ତ ନୁହେଁ କି ତାହା ଭାଷା ଓ ଶୈଳୀର କ୍ଳିଷ୍ଟତାରେ ଜଟିଳ

ନୁହେଁ । ଗୋପବନ୍ଧୁଙ୍କର ଏବଂ ତାଙ୍କର ସହକର୍ମୀମାନଙ୍କର ଗଦ୍ୟ-ରଚନାର ଆଂଶିକ ହେଲା ଏକ ସ୍ୱଭାବସିଦ୍ଧ ବର୍ଣ୍ଣନାତ୍ମକତା । ଏହି ସ୍ୱଭାବସିଦ୍ଧ ଜାତୀୟ ଭିତ୍ତିଭୂମି ଉପରେ 'ସତ୍ୟବାଦୀ' ପତ୍ରିକା ଯୁଗର ଗଦ୍ୟସନ୍ଦର୍ଭ ଆତ୍ମପ୍ରତିଷ୍ଠିତ । ଶବ୍ଦଯୋଜନା କଠିନ ନୁହେଁ, ବରଂ ଗଦ୍ୟ ମଧ୍ୟରେ ଏକ ଛନ୍ଦବଦ୍ଧ ଶୃଙ୍ଖଳା ଲେଖକଙ୍କର ଜ୍ଞାତ-ସାରରେ ହେଉ ବା ଅଜ୍ଞାତସାରରେ ହେଉ, ଆତ୍ମପ୍ରକାଶ କରିଅଛି । ଗୋପବନ୍ଧୁଙ୍କର ନାନାବିଧ ସମ୍ପାଦକୀୟ ଲେଖା ଓ ନିବନ୍ଧସମୂହ ଏକ ସୁଚିନ୍ତିତ ବିଧିବଦ୍ଧ ଗଦ୍ୟପଦ୍ଧତି ପ୍ରତି ବରାବର ଅପେକ୍ଷା ରଖିଥାଏ । ଏହାର କାରଣ ହେଉଛି ଜାତୀୟ ଜୀବନରେ ତାଙ୍କର ଏବଂ ତାଙ୍କ ସହକର୍ମୀମାନଙ୍କର ସୁଚିନ୍ତିତ ଧାରଣା । ଦୂରଦୃଷ୍ଟି ସ୍ୱସ୍ୱରଚନା ଉପରେ ପ୍ରଭୂତ ଆଲୋକପାତ କରିଅଛି ।

ଗୋପବନ୍ଧୁ ତାଙ୍କର କର୍ମମୟ ଜୀବନ ମଧ୍ୟରେ ବହୁ ଗୁରୁତ୍ୱପୂର୍ଣ୍ଣ ଚିଠିପତ୍ର ଲେଖିଥିଲେ । ସେସବୁର ଭାଷା, ଭାବ ଆଙ୍ଗିକ ଏବଂ ଆତ୍ମା ମଧ୍ୟ ପ୍ରଣିଧାନଯୋଗ୍ୟ ।

ଗୋପବନ୍ଧୁଙ୍କ ଲିଖିତ ଖଣ୍ଡିଏ ପତ୍ରର ଅବିକଳ ନକଲ ନିମ୍ନରେ ପ୍ରଦତ୍ତ ହେଲା :—

କଟକ
୮ । ୫ । ୨୮

ଶ୍ରୀମାନ ପ୍ରିୟ—

ମୋ ଦେହ ଅସୁସ୍ଥ ଥିଲା, ଏବେ ଭଲ ଅଛି । ମାତ୍ର ପୂରା ବଳ ପାଇ ନାହିଁ । ମୁଁ ଆଜକାଲି ସତ୍ୟବାଦୀରେ ରହୁଛି । ଦିନକ

ଲାଗି ଏଠାକୁ ବିଶେଷ କାର୍ଯ୍ୟବଶତଃ ଆସିଛି, କାଲି ଯାଉଛି । ଆଜିକାଲି ଚାରିଆଡ଼େ ଶ୍ରମଜୀବୀ ଆନ୍ଦୋଳନ ପ୍ରବଳ ଗତିରେ ଚାଲିଛି । ଓଡ଼ିଆ ଅଫିସ ଅକ୍ଷୁର୍ଣ୍ଣ ଭାବରେ ଥିଲେ ଏତେବେଳକୁ କେତେ ବଡ଼ ଶକ୍ତି ହୋଇଥାନ୍ତା ! ଯାହାହେଉ, ଏବେ ଯେ ପୁଣି ଓଡ଼ିଆମାନେ ଚେତି ଦଳବଦ୍ଧ ହେବାର ଚେଷ୍ଟା କରୁଅଛନ୍ତି, ଏହା ଶୁଣି ମୁଁ ଅତ୍ୟନ୍ତ ସୁଖୀ ହେଲି । ମୋର ମନ୍ଦ ସେ କଳ୍ପନା ସର୍ବଦା ମନରେ ଜାଗ୍ରତ ରହିଛି । ସେଠା ଓଡ଼ିଆ ଭାଇଙ୍କର ଏ ନବ-ଉଦ୍ୟମ ଦେଖି ମୁଁ ଉତ୍ସାହିତ ଓ ଆଶାନ୍ୱିତ ହେଉଅଛି। ଏ ସମ୍ବନ୍ଧରେ ଯଥୋଚିତ ସାହାଯ୍ୟ ସହାନୁଭୂତି ଦେଖାଇବାକୁ ପ୍ରସ୍ତୁତ ଅଛି । ଏବେ ସଙ୍ଗେ ସଙ୍ଗେ ଯିବା ମୋ ପକ୍ଷେ ସ୍ୱବିଧା-ଜନକ ନୁହେଁ । ମୋର ସ୍ୱାଭାବିକ ପୂର୍ବ ବଳ ନ ଆସିବାଯାଏ କୌଣସି ଆଡ଼େ ଯିବାକୁ ଡାକ୍ତର ମନା କରିଛନ୍ତି । ଆଉ ପନ୍ଦର କୋଡ଼ିଏ ଦିନ ପରେ ଯାଇପାରିବି ବୋଲି ଆଶା କରେଁ ।

× × ×

ଶୁଭାକାଙ୍‌କ୍ଷୀ

ଗୋପବନ୍ଧୁ ଦାସ

ଚିଠିପତ୍ରରେ ମଧ୍ୟ ଗୋପବନ୍ଧୁ ଏକ ପ୍ରଭାବଶାଳୀ ଶୈଳୀ ପ୍ରୟୋଗ କରିଥିଲେ । ଭାଷାର ସରଳତା, ଶବ୍ଦଯୋଜନାର ଅକୃତ୍ରିମତା ଏବଂ ଅନୁଭବପ୍ରାଣତା ଏତାଦୃଶ ରଚନାର ମୂଳଭିତ୍ତି । ଗୋଟିଏ ଗୋଟିଏ ଶବ୍ଦ ଏପରି ଭାବରେ ପ୍ରଯୁକ୍ତ ହୋଇଅଛି, ଯାହା ଉପରେ ଉଦ୍ଦିଷ୍ଟ ବକ୍ତବ୍ୟର ସାରବତ୍ତା ନିର୍ଭର କରେ ।

ଗୋପବନ୍ଧୁଙ୍କ ପ୍ରତିଷ୍ଠିତ 'ସତ୍ୟବାଦୀ' ପତ୍ରିକା ଯେପରି ଓଡ଼ିଆ ଭାଷାରେ ଗଦ୍ୟ-ସାହିତ୍ୟରେ ଏକ ବିଶିଷ୍ଟ ଶୈଳୀର ପ୍ରବର୍ତ୍ତକ, 'ସମାଜ' ମଧ୍ୟ ସେହିପରି ସାମ୍ବାଦିକତା କ୍ଷେତ୍ରରେ ଓଡ଼ିଆ ଭାଷାକୁ ଶ୍ରୀସମ୍ପନ୍ନ କରିଥିଲା । 'ସମାଜ' ପ୍ରଥମେ ସାପ୍ତାହିକ ଆକାରରେ ପ୍ରକାଶିତ ହୋଇଥିଲା ଏବଂ ପରେ ଏହା ଦୈନିକରେ ପରିଣତ ହେଲା । ଏହା ପ୍ରାୟ ୧୯୧୮ ମସିହାର ଘଟଣା । ଓଡ଼ିଆ ଭାଷାଭଣ୍ଡାର ଆବିଷ୍କାର କରି ତାହାର ବିସ୍ତାର ପ୍ରୟୋଗ ଏବଂ ପରିପ୍ରକୃର କରାଯାଇଥିଲା ଏବଂ ଏହି ଅଭିନବ ପ୍ରଚେଷ୍ଟା ମୂଳରେ 'ସମାଜ'ର ନୂତନ ଦୃଷ୍ଟିକୋଣ ଏବଂ ନୂତନ ପ୍ରକାଶନ-ଶୈଳୀ ହିଁ ନିହିତ । ଗୋପବନ୍ଧୁଙ୍କର ସାହିତ୍ୟସାଧନାର ବହୁ ବ୍ୟାପ୍ତି ସ୍ୱୀକୃତ । ସେଥିମଧ୍ୟରେ 'ସତ୍ୟବାଦୀ' ପତ୍ରିକା ଏବଂ 'ସମାଜ'ର ପରିକଳ୍ପନା ବାସ୍ତବିକ ବହୁ ଦୂରଦୃଷ୍ଟି ସାପେକ୍ଷ । ଅବଶ୍ୟ 'ସତ୍ୟବାଦୀ' ପତ୍ରିକାର ପ୍ରକାଶନ ବନ୍ଦହୋଇଗଲା, ମାତ୍ର ତାହାର ଅଭ୍ରାନ୍ତ ପ୍ରାମାଣିକ ଗଦ୍ୟ-ଶୈଳୀ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଅନୁକରଣୀୟ । 'ସମାଜ' ଧାରାବାହିକ ଭାବରେ ଦୈନିକ ରୂପରେ ଏ ଦେଶରେ ବାର୍ତ୍ତା ବହନ କରି ପ୍ରକାଶିତ ହେଉଛି ।

ଗୋପବନ୍ଧୁଙ୍କର କର୍ମବହୁଳ ଜୀବନ ଏବଂ ସେଥିମଧ୍ୟରେ ତାଙ୍କର ସାଧନାର କ୍ଷେତ୍ର ବନ୍ୟା-ଦୁଃଖ-ଦାରିଦ୍ର୍ୟପୀଡ଼ିତ ସାରା ଉତ୍କଳରେ ପରିବ୍ୟାପ୍ତ ହୋଇ ଯାଇଥିଲା ଏବଂ ସେ ତାଙ୍କର ସ୍ନେହ ମହୋଜ୍ଜ୍ୱଳ କର୍ମପୀଠରେ ଦୁଇଟି ଆଲୋକବର୍ତ୍ତିକା ସୃଷ୍ଟି କରିଥିଲେ । ଯଥାର୍ଥତଃ ସେ ଦୁଇଟି ହେଉଛି 'ସତ୍ୟବାଦୀ' ପତ୍ରିକା ଓ ଦୈନିକ 'ସମାଜ' । ଓଡ଼ିଆ ସାହିତ୍ୟ ତଥା ଭାଷାର ନୂତନ ଆଭିମୁଖ୍ୟ ସୃଷ୍ଟି ନିମନ୍ତେ 'ସତ୍ୟବାଦୀ' ଓ 'ସମାଜ'ର ଦାନ କଛି

କମ୍ ନୁହେ !! 'ସତ୍ୟବାଦୀ' ଓ 'ସମାଜ' ଗୋପବନ୍ଧୁଙ୍କ ସାହିତ୍ୟିକ ପ୍ରତିଭାର ଏକ ଅଭ୍ରାନ୍ତ ଆଭିମୁଖ୍ୟ ।

# ଭାରତର ଜାତୀୟତା ବିକାଶପଥରେ ଓଡ଼ିଆ ସାହିତ୍ୟର ଅବଦାନ

ସମୟର ଅନନ୍ତ ପ୍ରବାହରେ ପୃଥିବୀରେ ବିଭିନ୍ନ ରାଷ୍ଟ୍ର ଓ ଦେଶ-ମାନଙ୍କରେ ଐତିହାସିକ ଘଟଣାର ଘାତପ୍ରତିଘାତରେ ସଂଘର୍ଷ, ଦ୍ୱନ୍ଦ୍ୱ ଏବଂ ଅଶାନ୍ତି ଲାଗି ରହିଛି । ଏକ ଦେଶ ଅନ୍ୟ ଦେଶର ସ୍ୱାଧୀନତା ଅପହରଣପୂର୍ବକ ସେଠାରେ ନିଜର ଶିକ୍ଷା, ସଂସ୍କୃତି ଓ କ୍ଷମତାର ବୃଳୁ କରିଅଛି । ବିଜିତ ଦେଶ ପରାଧୀନତାର ଶୃଙ୍ଖଳରେ କେତେବେଳେ ଆର୍ତ୍ତନାଦ କରିଅଛି ତ କେତେବେଳେ ପୁଣି ଜାତୀୟ ପ୍ରେରଣାରେ ଘୋର ବିଦ୍ରୋହୀ ଏବଂ ବିପ୍ଳବୀ ହୋଇ ଉଠିଅଛି । ଏହି ବିଦ୍ରୋହ ଆଉ ବିପ୍ଳବର ବାତ୍ୟା ପ୍ରବାହିତ ହେବା ଫଳରେ ଦେଶର ଜନତା ନୂତନ ସ୍ୱାଧୀନତା ସ୍ୱପ୍ନରେ ବିହ୍ୱଳ ହୋଇ କୋଟି କଣ୍ଠରେ ଗାନ କରିଛନ୍ତି ବିପ୍ଳବର ସଙ୍ଗୀତ । ମୁକ୍ତି ଆଉ ସ୍ୱାଧୀନତା ପାଇଁ ଦେଶେ ଦେଶେ ଏହି ଯେଉଁ ବୈପ୍ଳବିକ ସଂସ୍ଥା ଏବଂ ଜାତିଗତ ସଙ୍ଗଠନ; ସେହି ସଂସ୍ଥା ଆଉ ସଙ୍ଗଠନର ନେତୃତ୍ୱ ଗ୍ରହଣ କରିଥାନ୍ତି ଦେଶର ଚିନ୍ତାଶୀଳ ବୁଦ୍ଧିଜୀବୀ ନିର୍ଭୀକ କର୍ମପୁରୁଷବୃନ୍ଦ ଆଉ ଏହି କର୍ମପୁରୁଷଗଣ ହିଁ ଅଧିକାଂଶ କ୍ଷେତ୍ରରେ ସୃଷ୍ଟ ଚିନ୍ତାଶୀଳ, ଭାବୁକ, ଦାର୍ଶନିକ, ସାହିତ୍ୟିକ ପର୍ଯ୍ୟାୟ ଅନ୍ତର୍ଭୁକ୍ତ । ଏହି ଚିନ୍ତାଶୀଳ ସାହିତ୍ୟିକବୃନ୍ଦ ହିଁ ସ୍କନ୍ଧରେ ସତ୍ୟ, ଆଉ ନିଷ୍ଠାର ଶୁଭ୍ର ଉପବୀତ ଧାରଣ କରି ଜନ୍ମ ହୋଇଥାନ୍ତି । ତେଣୁ କୋଟି କୋଟି ଜନତାର ନରନାରାୟଣ ରୂପୀ ଦେବତାଙ୍କର ଯଜ୍ଞାହୁତିରେ ସେହି ବୀରପୁରୁଷମାନଙ୍କର ଅଗ୍ନି ଉଦ୍‌ଗୀରଣକାରୀ ଚିନ୍ତା ହିଁ ପୂର୍ଣ୍ଣାହୁତି

ପ୍ରଦାନ କରିଥାଏ । ଆଗ୍ନେୟ ବିପ୍ଳବରେ ସାହିତ୍ୟିକ, ଶିଳ୍ପୀ, କବି ପ୍ରଭୃତିଙ୍କର ଆବିର୍ଭାବ, ଆଉ ସେହି ବିପ୍ଳବର ଅଭିମାନାରେ ହିଁ ସେମାନଙ୍କର ସ୍ୱପ୍ନର ସାର୍ଥକତା । ଚିନ୍ତାଶୀଳ ବ୍ୟକ୍ତିମାନେ ହିଁ ସାମାଜିକ ତଥା ଜାତୀୟ ଚେତନାର ରୁଦ୍ର ବାର୍ତ୍ତାବହ ଏବଂ ମାନବର ଜନ୍ମଗତ ଅଧିକାରର ସେମାନେ ହେଉଛନ୍ତି, ସମର୍ଥକ ରକ୍ଷକ । ଏହି ନିର୍ମଳ ଚିନ୍ତାକାଶୀ କବିମାନେହିଁ ଅତୀତରେ ନିଷ୍ପେଷିତ ନିର୍ଯାତିତ ପରାଧୀନ ଜନତା ପାଇଁ ପ୍ରତିକ୍ରିୟାଶୀଳ ଶକ୍ତି ସମ୍ମୁଖରେ ଜାହିର କରିଛନ୍ତି । ରୁଦ୍ର ଆଉ ଉଗ୍ର ସ୍ୱଭାବରେ ପ୍ରତିବାଦର ଧ୍ୱନି ତୋଳିଛନ୍ତି । ଫ୍ରାନ୍ସ ପରି କେତେ ରାଜ୍ୟରେ ନିପୀଡ଼ିତ ପ୍ରଜାବୃନ୍ଦ ନ୍ୟସ୍ତସ୍ୱାର୍ଥ ସାମନ୍ତବାଦ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଛନ୍ତି । ଆଉ ସେମାନଙ୍କ ଅନ୍ତରରେ ବିଦ୍ରୋହର ସ୍ଫୁଲିଙ୍ଗ ବୁଣିଛି କିଏ ? ଏହି କବି ହିଁ କୋମଳ ଲେଖନୀ ମୁଖରେ ନୀରବ ମୂର୍ଚ୍ଛନାରେ ନିର୍ଯାତିତ ଅନ୍ତରାତ୍ମାକୁ, ଜନତାର ମୂକ ଭଗବାନଙ୍କୁ ସ୍ୱର ବିକ୍ରମରେ ତୋଳି ଧରିଛନ୍ତି । ଜଣେ ଜଣେ କବିଙ୍କ ଅଗ୍ନିବର୍ଷୀ ବାଣୀ ଦ୍ୱାରା ସମାଜର ଅନ୍ତରାତ୍ମା ତରଙ୍ଗିତ ହୋଇଯାଇଛି । କେତେ ଅତ୍ୟାଚାରୀ ଶାସକଙ୍କର ଶୋଷଣଦୁର୍ଗ ତଳେ ଲୁଣ୍ଠିତ ହୋଇଅଛି । କେତେ ରକ୍ତପିପାସୁ ସେନାପତିଙ୍କର ଶୋଣିତ-ରଞ୍ଜିତ ହସ୍ତରୁ ଅସୀ ଖସି ପଡ଼ିଅଛି । କୁସଂସ୍କାର, କୁଶାସନ, ଦୁର୍ନୀତି, ଅନ୍ୟାୟ, ଶୋଷଣ ଅବିଳମ୍ବେ ଲୋପ ପାଇଅଛି । ଆଉ ତାହାର ସ୍ଥାନରେ ପ୍ରଭାତର ଶେଫାଳୀ ସଦୃଶ ସତ୍ୟ ଓ ମାନବିକତାର ଜୟ ପତାକା ପ୍ରୋଥିତ ହୋଇଅଛି । କବିର ଚିନ୍ତାହିଁ ଦାର୍ଶନିକର ସୂକ୍ଷ୍ମତମ ପ୍ରେରଣାଠାରୁ ବଳିଷ୍ଠ । ଅଗ୍ନିଠାରୁ ଅଧିକ ଜ୍ୱାଳାମୟୀ । ମନୁଷ୍ୟ ସମାଜର ମୁକ୍ତି ସଂଗ୍ରାମରେ ସାହିତ୍ୟର ଆବିର୍ଭାବ ସମ୍ପୂର୍ଣ୍ଣ ଯଥାର୍ଥ ଏବଂ ବୈପ୍ଳବିକ । ଆଉମଧ୍ୟ କେତେକ ଦେଶରେ ଗଣବିପ୍ଳବରେ ଚିନ୍ତାଶୀଳ ବ୍ୟକ୍ତିମାନେ ସକ୍ରିୟ ଭାଗନେଇ ସେହି ଦେଶରେ ନୂତନ ଜୀବନର ସୁଖ ଓ ସମୃଦ୍ଧିର ପଥ ପରିଷ୍କାର

କରିପାରନ୍ତି । ଭାରତର ସ୍ୱାଧୀନତା ଆନ୍ଦୋଳନ ପୃଥିବୀର ମୁକ୍ତିକାମୀ ମନୁଷ୍ୟ ସମାଜ ମଧ୍ୟରେ ଏକ ଉଚ୍ଚାଙ୍ଗ ଆଦର୍ଶ ତଥା ପ୍ରତିଷ୍ଠା ସ୍ଥାପନ କରିପାରିଛି । ବିନା ଅସ୍ତ୍ରରେ ସ୍ୱାଧୀନତା ସଂଗ୍ରାମରେ ଶୋଷକ ଅତ୍ୟାଚାରୀ ଶାସକର ଗୁଳିଗୋଳାର ସମ୍ମୁଖୀନ ହେବା ଏବଂ ଅହିଂସାର କବଚ ପିନ୍ଧି ସଶସ୍ତ୍ର ବାହିନୀର ପ୍ରତିଶୋଧମୂଳକ ଅଗ୍ନିକୁଣ୍ଡରେ ଝାସ ଦେବା କିଛି କମ୍ ଗୌରବର ବିଷୟ ନୁହେଁ । ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସ ହିଂସାତ୍ମକ ପରିବେଷ୍ଟନୀରେ ଆରମ୍ଭ ହୋଇ ସର୍ବଶେଷରେ ଅହିଂସାର ପରମ ଧର୍ମନିନାଦରେ ଝଂକୃତ ହୋଇଗଲା । ମୁକ୍ତିକାମୀ ଭାରତୀୟ ଜନତାର ସ୍ୱାଧୀନ ଚିନ୍ତା ଯେପରି ମହାତ୍ମା ଗାନ୍ଧୀଙ୍କ ଅହିଂସା ନୀତି ସ୍ପର୍ଶରେ ଏକ ନୂତନ ଆଦର୍ଶରେ ପରିବର୍ତ୍ତିତ ତଥା ମଣ୍ଡିତ ହୋଇଗଲା । ଆଉ ମହାତ୍ମା ଗାନ୍ଧୀଙ୍କ ଅହିଂସା, ସତ୍ୟ, ଅସହଯୋଗ ତଥା ସତ୍ୟାଗ୍ରହ ପ୍ରତିଷ୍ଠିତ ମୁକ୍ତି ସଂଗ୍ରାମ ଭାରତର ବିଭିନ୍ନ ପ୍ରାନ୍ତରେ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା କେବଳ ସମର୍ଥିତ ହେଲା ନାହିଁ ବରଂ ଦିନୁ ଦିନ ବଳିଷ୍ଠ ଏବଂ ବୃହତ୍ତର ହେବାକୁ ଲାଗିଲା । ଆଉ ଏହି ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଭାବ ପ୍ରକାଶର ମାଧ୍ୟମ ହୋଇଥିଲା ସାହିତ୍ୟ, ବକ୍ତୃତା କିମ୍ବା ପ୍ରଚାର । ତେବେ ସାହିତ୍ୟ ହିଁ ବିଶାଳ ପୃଷ୍ଠଭୂମିରୂପେ ପ୍ରତିଭାତ ହେଲା ।

ଭାରତର ଅନ୍ୟାନ୍ୟ ପ୍ରାନ୍ତମାନଙ୍କ ପରି ଓଡ଼ିଶା ରାଜ୍ୟ ମଧ୍ୟ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ଅହିଂସା ଆନ୍ଦୋଳନରୁ ବାଦ ଯାଇ ନ ଥିଲା । ଓଡ଼ିଶା ତାର ସମସ୍ତ ଶକ୍ତି ନିୟୋଗ କରି ଭାରତର ମୁକ୍ତି ସଂଗ୍ରାମକୁ ସମର୍ଥନ ଜଣାଇଥିଲା । କି କର୍ମୀ, କି ନେତା, କି ପ୍ରଚାରକ, କି ତ୍ୟାଗସର୍ବସ୍ୱ ବ୍ୟକ୍ତି ଅଥବା ସ୍ୱାଧୀନଚେତା ସାହିତ୍ୟିକ, ପ୍ରତ୍ୟେକେ ନିଜ ନିଜ ପରିସର ମଧ୍ୟରେ ରହି ଭାରତର ମୁକ୍ତି ସଂଗ୍ରାମ ସଞ୍ଚାଳନକୁ ଇନ୍ଧନ

ଯୋଗାଇଥିଲେ ।

ଏବେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକ ଉତ୍ସବ ପାଳିତ ହୋଇଅଛି । ମାତ୍ର ୧୮୫୭ ଖ୍ରୀଷ୍ଟାବ୍ଦରେ ସିପାହୀ ବିଦ୍ରୋହର ଯେଉଁ ବହ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠିଥିଲା, ତାହାର ବହୁ ବହୁ ବର୍ଷ ପୂର୍ବରୁ ଓଡ଼ିଶାରେ ପାଇକ ବିଦ୍ରୋହର ଡିଣ୍ଡିମ ଶୁଣାଯାଇଥିଲା ଏବଂ ଓଡ଼ିଶାର ବିଦ୍ରୋହୀ ପାଇକମାନଙ୍କର ରକ୍ତ ଯେପରି ଭାରତରେ ନୂତନ ସ୍ପନ୍ଦନ ସୃଷ୍ଟି କରିଥିଲା, ପାଟଣାଶୀ, ବକ୍‌ସି ଜଗବନ୍ଧୁ, ଜୟୀ ରାଜଗୁରୁ ପ୍ରଭୃତିଙ୍କର ପ୍ରେରଣା, ଖାଟେରାତ ବ୍ୟକ୍ତିତ୍ୱର ସଙ୍କେତ ଏବେ ମଧ୍ୟ ଭାରତର ମୁକ୍ତି ସଂଗ୍ରାମରେ ଜାଜ୍ଜ୍ୱଲ୍ୟମାନ । ୧୮୫୭ର ପାଇକ ବିଦ୍ରୋହର ପରବର୍ତ୍ତୀ ପ୍ରକାଶ ହେଲା ଜାତୀୟ କଂଗ୍ରେସ ଆନ୍ଦୋଳନ । ଆଉ ଏହି ଜାତୀୟ କଂଗ୍ରେସ ଆନ୍ଦୋଳନ ଯଥାର୍ଥରେ ବିଂଶ ଶତାବ୍ଦୀର ପ୍ରଥମ ମହାଯୁଦ୍ଧ ପରେ ହିଁ ଦୃଢ଼ୀଭୂତ ହୋଇ ଉଠିଥିଲା । ଯେଉଁ ସମୟ କଥା କୁହାଯାଉଅଛି ତାହା ପୂର୍ବପୂର୍ବ ଓଡ଼ିଆ ସାହିତ୍ୟରେ ରାଧାନାଥ, ଫକୀରମୋହନ, ମଧୁସୂଦନଙ୍କ ଯୁଗର ସନ୍ଧ୍ୟାକାଳ । କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ଯେଉଁ ଐତିହାସିକତା, ସ୍ବାଜାତ୍ୟତା ଏବଂ ପବିତ୍ର ଜାତୀୟତା ଭାବ ପ୍ରୋତ୍‌ଥିତ କରିଗଲେ, ଫକୀରମୋହନ ଯେଉଁ ନିର୍ମଳ ସାମାଜିକତାର ଜୟଗାନ କରିଗଲେ, ମଧୁସୂଦନ ଗୀତି ମାଧ୍ୟମରେ ଯେଉଁ ଦେଶାତ୍ମବୋଧ ଶୁଣାଇ ଦେଇଗଲେ, ତାହାର ଏକୀଭୂତ ରୂପ ଯଥାର୍ଥରେ ପରବର୍ତ୍ତୀ ଯୁଗରେ ଉତ୍କଳମଣିଙ୍କ ପରି କେତେକ ସ୍ୱାର୍ଥତ୍ୟାଗୀ ସମାଜ ଏବଂ ଦେଶସେବୀଙ୍କ ଲେଖନୀରେ ଆତ୍ମ-ପ୍ରକାଶ କରିଥିଲା । ରାଧାନାଥ ତାଙ୍କର ବ୍ୟଙ୍ଗବିଦ୍ରୂପାତ୍ମକ କାବ୍ୟ 'ଦରବାର'ରେ ସ୍ୱାଧୀନତା ସଂଗ୍ରାମର ନିର୍ମଳ ମୁକ୍ତ ଅବଧାରଣରେ ପରୋକ୍ଷରେ ହେଉ କିବା ପ୍ରତ୍ୟକ୍ଷରେ ହେଉ ଲେଖିଥିଲେ—

ଉପାଧି ଜଡ଼ତେ ଉଡ଼ିପାଧି ଜତ
ଉପାଧିରେ ଆଜ କରିବେ ଜଡ଼ିତ
ପଦଟିଏ ଦେବେ କର୍ଣ୍ଣ ରସାୟନ
ପଦ ଅନୁରୂପ ବସନ ଭୂଷଣ ।

*　　　*　　　*

ରାଧାନାଥ ଇଂରାଜୀ ଶାସକମାନଙ୍କ ଦ୍ଵାରା ଏ ଦେଶରେ ଆୟୋଜିତ ହେଉଥିବା 'ଦରବାର'କୁ ଲକ୍ଷ୍ୟ କରି ଘୋଷଣା କରିଛନ୍ତି—

ମନେ ନାହିଁ ତୁମ୍ଭେ କାହାର ସନ୍ତାନ
କେଉଁଙ୍କ ଔରସେ ତୁମ୍ଭେ ସିନା ଶ୍ଵାନ
ତୁମ ପିତୃଗଣ ପରମ ଉଦାର
ରାଜ୍ୟ ଦେଉଥିଲେ ଏକ ପଟେବାର
କାହିଁ ଗଲା ସେହି ପ୍ରାଚୀନ ସୁଧାର
ରାଜା ପ୍ରଜା ଏବେ ହେଲେ ବାଜ-ପାରା ।

ଇଂରେଜମାନଙ୍କର କ୍ଷମତା ଆଉ ଅଧିକାର ପ୍ରଦର୍ଶନୀ ଭୂମି 'ଦରବାର' ପ୍ରତି କବିର ଆଉ କି ପ୍ରକାର କଟାକ୍ଷ ଥାଇପାରେ ? ଫକୀରମୋହନ "ହାଟ ବାହୁଡ଼ା"ରେ ଲେଖିଥିଲେ—

"ଦେଖି ଲାଗିଲାଣି ତାଟଙ୍କା ମୋତେ
ଦେଶୀ ବିଲାତରେ ପ୍ରଭେଦ ଏତେ ।"

ଗଙ୍ଗାଧର ମେହେର ମଧ୍ୟ ଇଂରେଜ ସରକାରଙ୍କର ଏ ଦେଶରେ

ଜବରଦସ୍ତି ଶାସନକୁ ଲକ୍ଷ୍ୟ କରି ଦେଖିଥିଲେ—

"ମନ ଯା'ର ବ୍ୟସ୍ତ ସଦା ପରସ୍ୱହରଣେ
ଧନ ଯା'ର ବଢ଼ଇଛି ଗଣିକା ଚରଣେ
ଜୀବନ ଯା' ଲକ୍ଷ ଲକ୍ଷ ଲୋକଙ୍କର ଭର
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମଅବତାର ।"

ମାତ୍ର ଭାରତର ସ୍ୱାଧୀନତା ଆନ୍ଦୋଳନ ବାତ୍ୟା ପ୍ରାୟ ୧୯୧୯ ପରେ ହିଁ ଘନୀଭୂତ ହୋଇ ଉଠିଥିଲା, ଯେତେବେଳେ କି ମହାତ୍ମା ଗାନ୍ଧୀଙ୍କ ଅହିଂସା ସତ୍ୟ ପରିକଳ୍ପିତ ଅସହଯୋଗ ବାର୍ତ୍ତା ଭାରତର ପୁରପଲ୍ଲୀରେ ପ୍ରଚାରିତ ହେବାକୁ ଲାଗିଲା । ମହାତ୍ମା ଗାନ୍ଧୀଙ୍କ ବଜ୍ରଗମ୍ଭୀର ଆହ୍ୱାନରେ ଏ ଦେଶରେ ଯୁବଶକ୍ତି ଜାଗ୍ରତ ହେଲା, ଆଉମଧ୍ୟ ବୈପ୍ଳବାତ୍ମକ ଜାଗୃତିର ସଙ୍କେତ କି ସାହିତ୍ୟ କି ଚିତ୍ରକଳା, କି କର୍ମ-ପରମ୍ପରା ପ୍ରତ୍ୟେକ ବିଭାଗରେ ଫୁଟିଉଠିଲା ।

ଆମ ଦେଶର ମୁକ୍ତିସଂଗ୍ରାମର ଅସହଯୋଗ ଅହିଂସ ଆନ୍ଦୋଳନର ପରିସଧାରା ଏବଂ ଅଗ୍ନି ଉତ୍ସ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ବୈଚିତ୍ର୍ୟମୟ କର୍ମ-ଜୀବନରେ ଏବଂ ତାଙ୍କର ବହୁତୋମୁଖୀ ସାହିତ୍ୟିକ ସାଧନାରେ ହିଁ ସର୍ବପ୍ରଥମେ ଆତ୍ମପ୍ରକାଶ କରିଥିଲା । ଓଡ଼ିଶାର ଜାତୀୟ ଜୀବନରେ "ଅସହଯୋଗ"ର ବାର୍ତ୍ତାବହ ରୂପେ ଗୋପବନ୍ଧୁ ଯେଉଁ ପରିମାଣରେ ସକ୍ରିୟ ହୋଇଥିଲେ, ତାହାର ପୂର୍ଣ୍ଣ ପ୍ରଭାବ ତାଙ୍କର ରଚନାମାନଙ୍କ ମଧ୍ୟରେ ପରିଚିତ ହେଲା । ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଉତ୍କଳମଣି ଗୋପବନ୍ଧୁଙ୍କର "ବନ୍ଦୀର ଆତ୍ମକଥା" ଏବଂ "କାରାକବିତା" ହେଉଛି ଦୁଇଗୋଟି ଅବିସ୍ମରଣୀୟ

ଦାନ । ସେହି ବୀରପୁରୁଷ, କର୍ମବୀର, ସୁକବିଙ୍କର ଲେଖନୀରୁ ଜାତିର ଆପ୍ରାଣ ସଂଗ୍ରାମବେଳେ ନିଃସୃତ ହୋଇଥିଲା—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼
ସ୍ୱାଧୀନତା ପଥେ ଗଲେ ହେଲେ ନର
ମୋ ଜୀବନ ଦାନ ହେଉ ଅଗ୍ରସର ।
(ବନ୍ଦୀର ଆତ୍ମକଥା)

'ସ୍ୱାଧୀନତା ସଂଗ୍ରାମ'ର କି ପ୍ରାଣସ୍ପର୍ଶୀ ଆହ୍ୱାନ ! ଏଥିରେ ଶତ୍ରୁ-ଶୃଙ୍ଖଳିକାଙ୍କ କି ପ୍ରକାର ଅଦମ୍ୟ ପ୍ରେରଣା ନିହିତ ରହିଛି ! ସ୍ୱାଧୀନତା ସଂଗ୍ରାମର ଯାତ୍ରାପଥରେ ଉତ୍କଳମଣିଙ୍କର ଏହି ପ୍ରକାର ସଙ୍ଗୀତ ବାସ୍ତବିକ କର୍ମପରମ୍ପରା ବିଶ୍ୱାସଜଡ଼ିତ ନୁହେଁ କି ? ପୁଣି କବି ଜନତାକୁ ଅଭୟ ଦେଇ ଶୁଣାଇଛନ୍ତି—

" ଚାଲ ସତ୍ୟପଥେ ନାହିଁ ଡର ଭୟ
ଅସହଯୋଗର ବିଜୟ ନିଶ୍ଚୟ ।"

ଏ ଦେଶର ପୁଣ୍ୟମାଟି, ପୁଣ୍ୟକୀର୍ତ୍ତି, ଦେବାଳୟ ପ୍ରଭୃତିକୁ ଉଦ୍ଧାର କରିବା ପାଇଁ କବିଙ୍କ କି ଆକୁଳ ନିବେଦନ !

ସେତେବେଳେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଘନଘଟା, ଘୋର ବିଷମ ପରିସ୍ଥିତି । ବିଦେଶୀ ଶାସକଗୋଷ୍ଠୀଙ୍କର ନିର୍ମମ ଦମନନୀତି;

ଗୁଳିଗୋଳା ବନ୍ଧୁକର ଆଘାତ ଓ କାରାଗାରର ନିର୍ମମ ନିର୍ଯାତନା ସହ୍ୟ କରି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବା ପାଇଁ କି ପ୍ରକାର ସାହସ ଏବଂ ଧୈର୍ଯ୍ୟ ଆବଶ୍ୟକ, ତାହା ସହଜରେ ଅନୁମେୟ । ଯୋଗ୍ୟ ନେତାଙ୍କର ଅଭାବ ଉପଲବ୍ଧି କରି ଗୋପବନ୍ଧୁ ସାନ୍ତ୍ୱନା ଦେଇ କାରାର ପ୍ରାଚୀର ତଳୁ ଯାହା ଲେଖିଥିଲେ, ଆଜି ସେହି ଅମରବାଣୀ ଉତ୍କଳଖଣ୍ଡରେ ପ୍ରତିଧ୍ୱନିତ ହୁଏ ।

"ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।"

(ବନ୍ଦୀର ଆତ୍ମକଥା)

୧୯୨୩-୨୪ ମସିହାରେ ହଜାରିବାଗ ଜେଲରେ ଗୋପବନ୍ଧୁ ବନ୍ଦୀ ହୋଇଥିଲେ । ତାଙ୍କର ନିର୍ମଳ ହୃଦୟର ଅଶ୍ରୁଧାରା କବିତାରେ ହିଁ ପ୍ରତିଫଳିତ । ସେ କହୁଛନ୍ତି 'କାତରତା' କାପୁରୁଷର ଲକ୍ଷଣ । ସର୍ବୋପରି "ବନ୍ଦୀର ଆତ୍ମକଥା" ଏବଂ "କାରାକବିତା" ଭାରତର ସ୍ୱାଧୀନତା ସଂଗ୍ରାମର ମୂର୍ଚ୍ଛନାମୟ ଇତିହାସର ଜୀବନ୍ତ ଚିତ୍ରିକା । ଏହି ଦୁଇଖଣ୍ଡି କବିତାଗ୍ରନ୍ଥର ପ୍ରତି ଅକ୍ଷରରେ ଯେପରି ପରାଧୀନତା-କ୍ଲିଷ୍ଟ ନରନାରୀ ଏବଂ ମୁକ୍ତିପିପାସୀ ସଂଗ୍ରାମଲିପ୍ସୁ ନରନାରୀଙ୍କର ଅଶ୍ରୁ ଏବଂ ଶୋଣିତର ସହାନୁଭୂତିଶୀଳ ଏବଂ କରୁଣ ବ୍ୟଥା ଲିଖିତ ହୋଇ ରହିଅଛି, କନିକା ପ୍ରଜାଙ୍କର ଦୁଃଖ, ଜେନାପୁରବାସୀ ଏବଂ ଭଦ୍ରକବାସୀଙ୍କର ନିର୍ଯାତନା ଭୋଗ ତାଙ୍କର ରଚନାରେ ଯେପରି ବର୍ଣ୍ଣିତ ହୋଇଅଛି, ତାହା ଯଥାର୍ଥରେ ଜାତୀୟମୁକ୍ତି ସଂଗ୍ରାମର ବରନିକା ।

'ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ସାହିତ୍ୟରେ ଶାଶ୍ୱତରୂପ ପ୍ରଦାନ କରିବାରେ ଉତ୍କଳମଣି ଏବଂ ଏହି ଆଦର୍ଶକୁ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ କର୍ମରେ ପରିଣତ କରିଥିଲେ ଏବଂ ନିଜ ନିଜ ରଚନାମାନଙ୍କରେ ମଧ୍ୟ ତା'ର ବିକାଶ ସାଧନ କରିଥିଲେ । ସତ୍ୟବାଦୀ ସାହିତ୍ୟିକ ମଣ୍ଡଳୀ କାବ୍ୟକବିତାଠାରୁ ଆରମ୍ଭ କରି ଇତିହାସ, ପ୍ରବନ୍ଧଆଦି ରଚନା ପର୍ଯ୍ୟନ୍ତ ପ୍ରତ୍ୟେକ ବିଭାଗରେ ଭାରତର ସ୍ୱାଧୀନତା ଆନ୍ଦୋଳନର ସଂଗ୍ରାମମୁଖୀ ବାର୍ତ୍ତା ପ୍ରଚାର କରିଥିଲେ । ଓଡ଼ିଆ ସାହିତ୍ୟରେ ରାଧାନାଥ, ଫକୀରମୋହନଙ୍କ ପରେ ଘଟିପରିବର୍ତ୍ତନ ଘଟିଥାଏ । ବହୁ ନୂତନ ଲେଖକଲେଖିକା ସମସାମୟିକ ଜାତୀୟଜୀବନର ସମସ୍ୟାରେ ଉଦ୍‌ବୁଦ୍ଧ ହୋଇ ସାହିତ୍ୟ ମାଧ୍ୟମରେ ସ୍ୱକୀୟ ଚିନ୍ତାଧାରା ପରିବେଷଣ କରୁଥାନ୍ତି; ବିଶେଷତଃ ୧୯୨୮ ମସିହା ପରେ ଯେତେବେଳେ ଓଡ଼ିଆ ସାହିତ୍ୟରେ "ସବୁଜ ସମିତି" ନାମରେ ଏକ ବୈଜ୍ଞାନିକ ଚିନ୍ତାମୁଖୀ ସଂସ୍ଥାର ସୂତ୍ରପାତ ହୁଏ, ସେତେବେଳେ ଭାରତୀୟ ସ୍ୱାଧୀନତା, ତଥା ଆନ୍ତର୍ଜାତିକ ମୁକ୍ତି ଓ ପ୍ରଗତିର ଭାବଧାରା ଓଡ଼ିଆ ସାହିତ୍ୟରେ ପ୍ରକଟିତ ହୋଇଥିଲା । ଏହି ରୋମାନ୍ଟିକ ସ୍ୱଭାବଧର୍ମୀ ବିପ୍ଳବୀ କବିମାନଙ୍କର ଦୃଷ୍ଟି କେବଳ ଭାରତ ଉପରେ ପତିତ ହୋଇ ନ ଥିଲା, ବିଶ୍ୱମାନବର ଜନ୍ମଗତ ଅଧିକାର ଓ ଦାବୀ ତଥା ସାମ୍ରାଜ୍ୟବାଦର ଶୋଷଣ, ଦମନ, କ୍ଷମତାଲିପ୍ସା ପାଇଁ ଘୃଣା, ଅବଜ୍ଞା ଏହି ବିଂଶ ଶତାବ୍ଦୀର ତୃତୀୟ ଦଶକ ପରବର୍ତ୍ତୀ କବିମାନଙ୍କର ଲେଖନୀର ହେଲା ଆଧାର । ଏହି ଲେଖକମାନଙ୍କର ଚିନ୍ତାଧାରା ବିଶ୍ଳେଷଣ କରିବା ପୂର୍ବରୁ ଏଠାରେ ନାୟିକବି କୁନ୍ତଳା-କୁମାରୀଙ୍କର ଭାରତୀୟ ମୁକ୍ତିସଂଗ୍ରାମ ପ୍ରତି ଯେଉଁ ଶ୍ରେଷ୍ଠ ଦାନ, ତାହା ଉଲ୍ଲେଖଯୋଗ୍ୟ । ନାୟିକବିଙ୍କର "ଆହ୍ୱାନ" ପୁସ୍ତିକା ତତ୍‌କାଳୀନ

ସାମ୍ରାଜ୍ୟବାଦୀ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । "ସ୍ଫୁଲିଙ୍ଗର" ବହୁ କବିତା ଦେଶାତ୍ମବୋଧ ଏବଂ ତୀବ୍ର ଜାତୀୟତାଭାବ ସମ୍ବଳିତ । କୁନ୍ତଳାକୁମାରୀଙ୍କ "ସ୍ଫୁଲିଙ୍ଗ" ଯେପରି ପରାଭୂତ ଜାତୀୟ ପଞ୍ଜାହୃତର ଏକ ତୀବ୍ର ପ୍ରଜ୍ୱଳନ । ସର୍ବପ୍ରଥମେ ନାଗରିକମାନଙ୍କର ଜନ୍ମଗତ ଅଧିକାର ନେଇ ସେ ଘୋଷଣା କରିଛନ୍ତି—

"ଅମୃତ ସନ୍ତାନ ମୁହିଁ ସୁଧା ଅଧିକାରୀ
ଅନନ୍ତ ତିମିର ତଳେ ପାପ୍ତ ପାଦଧାରୀ ।"

ସେହି କବିଙ୍କର ଲେଖନୀରୁ କି ଉଚ୍ଛ୍ୱାସରେ ନିଃସୃତ ହୋଇଅଛି—

ଶୁଣ ହେ ମଣିଷଭାଇ
ଝୁରି ମରିବାକୁ    ବୁଡ଼ି ମରିବାକୁ
ମଣିଷ ଜନମି ନାହିଁ
ସତ ହତଶ୍ୱାସେ    ସାରିବ ସଂସାର
ନରାଶେ ନିବିଡ଼ ଅନ୍ଧାରେ
ଚିର ଶୃଙ୍ଖଳିତ,    ଲାଞ୍ଛିତ ବଞ୍ଚିତ
ପୀଡ଼ିତ କରୁଣ କାରରେ
ଏ ନୁହେଁ ମାନବ ନିୟତି
ଧ୍ୱଂସର ଯାତ୍ରୀ,    ମୃତ୍ୟୁର ଧାତ୍ରୀ
ନୁହେଁ ଏ ବିଶାଳ ଜଗତି
ଶୁଣ ହେ ମଣିଷ ଭାଇ
ଅମୃତ-ପାପ୍ତି-ସନ୍ତାନ ତୁମେ ମରଣ
ତୁମର ନାହିଁ ।

କବିଙ୍କର 'ପୁରୁଣା ଓଡ଼ିଆ', 'ଭାରତମାତା', 'ଚରୁଣର ଅବାହନ', 'ଅଭିଶପ୍ତର ଆଭିମାନ' ପ୍ରଭୃତି କବିତାରେ କବିହୃଦୟର ନିଭୃତ ବାସନା ରୂପାୟିତ । କବି ପଚାରିଛନ୍ତି ଆକୁଳ ହୃଦୟରେ—

କହ ଚେକ ସାଗର କୂଳ ଉଦ୍ଧାରିବ ଭାଇ
ଦେଶପ୍ରେମୀ କର୍ମବୀର ଭଗୀରଥ କାହିଁ ?

ଗାନ୍ଧୀର ଆତ୍ମବିଶ୍ୱାସ, ନିର୍ମଳ ଦେଶାତ୍ମବୋଧ, ନିର୍ଭୀକ ମାନବିକତାର ବଶବର୍ତ୍ତୀ ହୋଇ କବି ଜାତୀୟ ଯଜ୍ଞାନଳରେ "ସ୍ଫୁଲିଙ୍ଗ" ରୂପେ ଅଗ୍ନିକଣାକୁ ପ୍ରଦୀପ୍ତ କରି ଅଛନ୍ତି । ତେଣୁ ତାଙ୍କର ରୁଦ୍ର ବାଣୀ ହେଉଛି—

ଯାଅ ତେବେ ଗୋ ସ୍ଫୁଲିଙ୍ଗ କ୍ଷୁଦ୍ର ଅଗ୍ନିକଣା,
ଆଣି ଜୀବନେ ଅନନ୍ତ ଆନନ୍ଦ ପ୍ରେରଣା ।

ଭାରତୀୟ ମୁକ୍ତିସଂଗ୍ରାମମୁଖୀ ସାହିତ୍ୟ ଇତିହାସର ଉନ୍ନତ ପୃଷ୍ଠାରେ "ସ୍ଫୁଲିଙ୍ଗ" ଏକ ଅନବଦ୍ୟ ଦାନ । ଯାହା ଜାତୀୟତା ତଥା ମାନବବାଦର ଘୋଷଣା ହିଁ ଏହାର ଆଲେଖ୍ୟ ।

୧୯୩୦ ମସିହାର ପରବର୍ତ୍ତୀ ସମୟରେ କାଳନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ବାଞ୍ଛାନିଧି ମହାନ୍ତି, ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର ପ୍ରମୁଖ ଲେଖକମାନେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଜୟଗାନରେ ଲେଖନୀ ଧାରଣ କରିଛନ୍ତି । ନାନା ମତବାଦ, ନାନା ଆଦର୍ଶ, ନାନା ରାଜନୈତିକ ଭେଦାଭେଦ ମଧ୍ୟରେ ପରାଧୀନ ଭାରତୀୟ ଜନତାର କୋଟି କଣ୍ଠର ଏକ ଗାନ ଆତ୍ମପ୍ରକାଶ କରିଅଛି । ଏତଦ୍‌ବ୍ୟତୀତ

ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଗୋଦାବରୀଶ ମହାପାତ୍ର,

ହରେକୃଷ୍ଣ ମହତାବ, ନବଜମୋହନ ପ୍ରଧାନ, ରାଧାନାଥ ରଥ, ହରେକିଶୋର ଦାସ ପ୍ରମୁଖ ବହୁ ଜାତୀୟ ସଂଗ୍ରାମ ବୀରମାନଙ୍କର ଲେଖାରେ ମୁକ୍ତିସଂଗ୍ରାମର ବାର୍ତ୍ତା ପ୍ରତିଫଳିତ ହୋଇ ପାରିଥିଲା । ହରେକୃଷ୍ଣ ମହତାବଙ୍କର "ପଲାସୀ ଅବସାନେ" ଭାରତୀୟ ସ୍ୱାଧୀନତା ସଂଗ୍ରାମର ପବିତ୍ର ସ୍ମରଣରେ ଓଡ଼ିଆ କାବ୍ୟସାହିତ୍ୟକୁ ଏକ ବିରାଟ ଦାନ । ତାଙ୍କର ଲିଖିତ "ପ୍ରତିଭା" ଉପନ୍ୟାସରେ ଭାରତୀୟ ମୁକ୍ତି ସଂଗ୍ରାମ ହିଁ ବିଷୟବସ୍ତୁ ରୂପେ ଗୃହୀତ । ନବଜମୋହନ ପ୍ରଧାନଙ୍କର "ମୁକ୍ତିପଥେ ସୈନିକ" ସ୍ୱାଧୀନତା ସଂଗ୍ରାମର ଏକ ଅଦ୍ଭୁତ ସ୍ମରଣିକା ଭାବରେ ଗ୍ରହଣ କରାଯାଇପାରେ ।

କାଳନ୍ଦୀଚରଣ ପାଣିଗ୍ରାହୀଙ୍କର 'ଭାରତ ଆସିବ ଫେରି' କବିତା ଏଠାରେ ପ୍ରଣିଧାନ ଯୋଗ୍ୟ ।

ଦୁନିଆ ଉପରେ ବଜାଇ ବିଜୟ ଭେରୀ
ଅନ୍ଧାର କୋଳୁ ଭାରତ ଆସିବ ଫେରି
ଆସିବ ଫେରି ସେ ନିଜ ଗଉରବେ
ଚକିତ ଧରାରେ ଚାହିଁବେ ସରବେ
ବିଶ୍ୱ ସଭାରେ ଆଦରେ ତାହାକୁ
ବସିବେ ସକଳେ ଘେରି,
ଅନ୍ଧାର କୋଳୁଁ ଭାରତ ଆସିବ ଫେରି ।
କମାଣରୁ ବଳି ଉତାରିଲେ ସେହୁ ହାତ
ବତାଇଲେ ଏହି ମରଣାପନ୍ନ ଜାତି ।
ଡାକିଲେ ଆସ ରେ ଆସ ମୋର ଦେଶ
ମୃତ୍ୟୁ ନୁହେଁ ତ ଜୀବନର ଶେଷ ।

ଜୀବନ ମରଣ ଲୁଚକାଳି ଖେଳ
ଖେଳିବା ଆସରେ ଜାତି
ଡାକିଲେ ଉଠ ରେ ମାରଣାପନ୍ନ ଜାତି ।

ସଂପୃକ୍ତ କବିଙ୍କର 'ମାଟିର ମଣିଷ' ଉପନ୍ୟାସରେ ସତ୍ୟ ଓ ଅହିଂସା ଦ୍ୱାରା ହୃଦୟର ପରିବର୍ତ୍ତନକୁ ଲକ୍ଷ୍ୟ କରାଯାଇଛି ।

ମାୟାଧର ମାନସିଂହଙ୍କର—

ଦେଶେ ଦେଶେ ଯେତେ
ଲାଞ୍ଛିତ ପଦଦଳିତ ମଳିନ ଅପମାନିତ
ତମ ଯୋଗୁଁ ବହୁ ଯୁଗ ପରେ ହେଲ
ମହତ ତାଙ୍କ ଉଦ୍ବେଳିତ ।

(ବାପୁଜୀ)

ରଚନା ପଂକ୍ତି "ମହାତ୍ମା"ଙ୍କର ଆମୋଘ ଅସ୍ତ୍ର ଅହିଂସାର ସାରବତ୍ତା ପ୍ରମାଣ କରିଥାଏ । ଏତଦ୍‌ବ୍ୟତୀତ ଓଡ଼ିଶାର ବହୁ ଲେଖକ ଓ କବି ସେମାନଙ୍କର ତରୁଣ ଗୃହଜୀବନରୁ ମୁକ୍ତି ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ ଏବଂ ସେମାନଙ୍କର ଅଗ୍ନିମୟ କବିତା ଆଜି ମଧ୍ୟ ପ୍ରାଣକୁ ସ୍ପର୍ଶ କରିଥାଏ ।

ସଚ୍ଚିଦାନନ୍ଦ ରାଉତରାୟଙ୍କର 'ବାଜି ରାଉତ' ଢେଙ୍କାନାଳ ଆନ୍ଦୋଳନରେ ପ୍ରତ୍ୟକ୍ଷୀଭୂତ ହେଲେ ହେଁ ସମଗ୍ର ଭାରତୀୟ ଆନ୍ଦୋ-ଳନର ସ୍ୱରୂପ ତଥା ସାମ୍ରାଜ୍ୟବାଦର ନଗ୍ନରୂପ ପ୍ରକାଶ କରିଅଛି । ରଜନୀକାନ୍ତ ଦାସଙ୍କର "ରଘୁ ମହାନ୍ତି" ଏବଂ ଏହି ଲେଖକଙ୍କର "ବିଦ୍ରୋହୀ ଦିବାକର" କବିତା ବହି ମୁକ୍ତିସଂଗ୍ରାମର ପ୍ରଶଂସାପତ୍ର ବୋଲି ଜଣାଯାଏ । ରଘୁ ମହାନ୍ତି ଏବଂ ଦିବାକର ପଟ୍ଟନାୟକ ଗଡ଼ଜାତ ଆନ୍ଦୋଳନରେ ବିଶେଷତଃ ରଣପୁର ଆନ୍ଦୋଳନର ନେତୃତ୍ୱ ନେଇ

ଶେଷରେ ଫାଶିକାଠରେ ଝୁଲିଥିଲେ । ଗୋଦାବରୀଶ ମହାପାତ୍ରଙ୍କର ଅନ୍ୟାନ୍ୟ ରଚନାମାନଙ୍କ ମଧ୍ୟରେ 'ଉଠ କଙ୍କାଳ' ଏକ ବିଶିଷ୍ଟ କବିତା । ତାହାର ବିଶ୍ଳେଷଣ ହୃଦୟକୁ ଜାତୀୟତାର ଛନ୍ଦ ପବନରେ ମୁଗ୍ଧ କରିଥାଏ । ନିତ୍ୟାନନ୍ଦ ମହାପାତ୍ରଙ୍କର 'ସ୍ୱାଧୀନତା ନାହିଁ ଦୂରେ' କବିତାର ମର୍ମ ଅନୁଧ୍ୟାନଯୋଗ୍ୟ ।

ସାକ୍ଷୀ ନାହିଁ ଦେଶ ସ୍ୱାଧୀନତା
ନୁହଁ ପରାଧୀନ ଜାତି
ମୁକତି କି, କିଏ ଦେବ ଆଣି ବନ୍ଧୁ
ହୋଇଥିଲେ ଆତ୍ମଘାତୀ

*　*　*

ସ୍ୱାଧୀନତା ନାହିଁ ଦୂରେ ।
ଆତ୍ମବଳର ମୂଳେ ସ୍ୱାଧୀନତା ନ ଥାଏ ଅନ୍ୟ ପୁରେ ।

ଏତଦ୍‌ବ୍ୟତୀତ ଏ ଦେଶରେ ବହୁ କବି, ଔପନ୍ୟାସିକ ଓ ଗାଳ୍ପିକ ଭାରତର ମୁକ୍ତିସଂଗ୍ରାମକୁ କେନ୍ଦ୍ରକରି ଅଥବା ୧୯୪୨ ଆନ୍ଦୋଳନକୁ ଉପାଦାନ କରି ଶହୀଦମାନଙ୍କର ଆତ୍ମତ୍ୟାଗକୁ ଉପଲବ୍ଧି କରି ବଳିଷ୍ଠ ରଚନା ସମୂହ ସୃଷ୍ଟିକରି ପାରିଛନ୍ତି, ଯାହା କି ସ୍ୱରାଜ୍ୟ ସାଧନର ଇତିହାସରେ ଏକ ଅପରିହାର୍ଯ୍ୟ ପରିଚ୍ଛେଦ । ବୀରକିଶୋର ଦାସ, ବାଞ୍ଛାନିଧି ଦାସ, ମନମୋହନ ମିଶ୍ର, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅନନ୍ତ ପଟ୍ଟନାୟକ ପ୍ରମୁଖ କର୍ମୀ ଏବଂ ଲେଖକମାନଙ୍କ ରଚନାରେ ଭାରତୀୟ ମୁକ୍ତିସଂଗ୍ରାମର ଆହ୍ୱାନ ଶୁଣାଯାଏ । ଏ ମଧ୍ୟରେ ବହୁ ତରୁଣ କବିଙ୍କର ଶୁଭଆବିର୍ଭାବ ହୋଇଅଛି — ଯେଉଁମାନେ ମନୁଷ୍ୟର ଅନ୍ତର-ନିହିତ ଶିବ ସତ୍ୟ ଏବଂ ସୌନ୍ଦର୍ଯ୍ୟର ଉପାସକ । ଭାରତର ମୁକ୍ତିଆନ୍ଦୋଳନ ଧାରା ଭାରତର ଅନ୍ୟାନ୍ୟ ସାହିତ୍ୟ

ପରି ଓଡ଼ିଆ ସାହିତ୍ୟକୁ ବିଶେଷ ପ୍ରଭାବିତ କରିଛି । ନିର୍ମଳ ଜାତୀୟତା ଏବଂ ସତ୍ୟ ଅହିଂସା ଅସହଯୋଗ ପ୍ରଣୋଦିତ ଜନତାର ସଂଗ୍ରାମ ପ୍ରତି ଯୁଗରେ ସାହିତ୍ୟିକର ଆଦରର ବସ୍ତୁ ହୋଇଛି ଏବଂ 'ଓଡ଼ିଆ ସାହିତ୍ୟ' ଏହି ଅଧିକାରରୁ ଆଦୌ ବଞ୍ଚିତ ନୁହେଁ । ଯାହା ସର୍ବଜନ ନିମନ୍ତେ ଅଭିପ୍ରେତ, ମଙ୍ଗଳକର, ତାହାର ଆବାହନୀ ଓଡ଼ିଆ କବିର ଅନ୍ତରକୁ ଉଦ୍‌ବୁଦ୍ଧ କରିଅଛି । ସର୍ବଶେଷରେ ଭାରତର ମୁକ୍ତି ଆନ୍ଦୋଳନକୁ ଆହୁତି ଯୋଗାଇଥିବା ସ୍ୱର୍ଗୀୟ କବି ବାଞ୍ଛାନିଧି ମହାନ୍ତିଙ୍କର କେତୋଟି ପଦ ଉଦ୍ଧାର କରି ପ୍ରବନ୍ଧର ଉପସଂହାର କରୁଅଛି ।

ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ହେ,
କମ୍ବା
କହ କହ କେଉଁ ଜାତି ପାଇଛି ମୁକତି
କରି ଜୁଟିହାରି ଗୁହାରି
(ବାଞ୍ଛାନିଧି)

ଅସହଯୋଗ ଆନ୍ଦୋଳନକୁ ପ୍ରେରଣା ଦେଇ କବି ବୀର-କିଶୋର ଦାସ ଯେତେବେଳେ ଗାଇଛନ୍ତି ।

"ଡାକେ ବନ୍ଧୁକ ଡାକେ ତରବାରି"

ଏବଂ ଆଧୁନିକ କାଳର ତରୁଣ କବି ବାଞ୍ଛାନିଧି ଦାସଙ୍କର—

ଏଇ ପତାକା ତଳେରେ
ଏଇ ପତାକା ତଳେ
ଏହି ଜାତିର ଗର୍ବି ପାରେ
ଭାଗ୍ୟରବି ଜଳେ
ଏହି ପତାକା ତଳେ ।

ଏବେ ଯୁବକଣ୍ଠରେ ଝଙ୍କୃତ ହେଉଅଛି । ଓଡ଼ିଆ କବି ସ୍ୱାଧୀନତା ସଂଗ୍ରାମରେ ବରାବର ଆଶାବାଦମୂଳକ ଉଦ୍‌ବୋଧନ ଦେଇଥିଲେ ।

— ✳ —